# ଅମର ଶହୀଦ ଗ୍ରନ୍ଥମାଳା






ଗୁରୁଜୀ ବୁକ୍‌ଷ୍ଟଲ
ଝାଞ୍ଜିରୀମଙ୍ଗଳା, କଟକ-୯

অমর শহীদ গ୍ରନ୍ଥମାଳା—୨

ଲେଖକ :
ଶ୍ରୀ କୃତ୍ତିବାସ ନାୟକ, ଏମ୍. ଏ. ( ଗବେଷକ )

ପ୍ରକାଶକ :
ଶ୍ରୀକୃତ୍ତିବାସ ଗୁରୁ
ଗୁରୁଜୀ ବୁକ୍‌ଷ୍ଟଲ
କଟକ-୯

ମୁଦ୍ରଣ :
ଗୁରୁଜୀ ପ୍ରିଣ୍ଟର୍ସ
ଝାଞ୍ଜିରିମଙ୍ଗଳା, କଟକ-୯

ପ୍ରଥମ ସଂସ୍କରଣ :
୧୯୮୭

ମୂଲ୍ୟ : ଟ ୪-୫୦ ମାତ୍ର

# AMARA SAHEED GRANTHA MALA-2

By : Kruttibas Nayak, M. A.

Publisher : Gurujee Book Stall
Cuttack-9

Printer . Gurujee Printers
Cuttack-9

1st Edition : 1987

Price Rs. : 4-50

# ଉତ୍ସର୍ଗ

ସ୍ୱାଧୀନତା ଆନ୍ଦୋଳନ ରୂପକ ଜାତୀୟ ମହାଯୁଦ୍ଧରେ ଆତ୍ମବଳୀ ଦେଇଥିବା ଅଗଣିତ ମହାନ୍ ଶହୀଦମାନଙ୍କ ପବିତ୍ର ସ୍ମୃତି ଉଦ୍ଦେଶ୍ୟରେ·········



# ସୂଚୀ


| ବିଷୟ | ପୃଷ୍ଠା |
|---|---|
| ୧ । ପୋଡ଼ିଯାଉ ତୁମ କଳାଶାସନ | ୫ |
| ୨ । ଶଶୁରଙ୍କର କଟାମୁଣ୍ଡ ଲୋଡ଼ା | ୮ |
| ୩ । ଫାଶୀ ଖୁଣ୍ଟରେ ମାଧୋସିଂହ | ୧୨ |
| ୪ । ବଣୁଆ ତାମାର ସାହସ | ୧୫ |
| ୫ । ନିଅ ମୋର ମଥାଟି | ୨୧ |
| ୬ । କେନ୍ଦୁଝରର ଭୂୟାଁ ସର୍ଦ୍ଦାର | ୨୬ |
| ୭ । ଦେଶପ୍ରେମୀ ଶହୀଦ କହ୍ନେଇଲାଲ | ୩୧ |
| ୮ । ପ୍ରଥମ ଶହୀଦ ଜଗନ୍ ସେଠ୍ | ୩୫ |
| ୯ । ଇରମ ଶହୀଦ ବିକୁଳି | ୩୯ |






ଇଂରେଜ ଶାସନ ଅମଳରେ ଭାରତର କୌଣସି ଅଞ୍ଚଳ କର୍ମଚାରୀଙ୍କ ଦାଉରୁ ରକ୍ଷା ପାଇପାରି ନଥିଲା । ଶାସନ କଳ ଯେତେ ଦୃଢ଼ ହେଉଥାଏ, ଅନ୍ୟାୟ ଅତ୍ୟାଚାର ସେହି ପରିମାଣରେ ବଢ଼ି ଚାଲୁଥାଏ । ମନଇଚ୍ଛା ଖଜଣା, କର ଆଦାୟ କରି ପ୍ରଜା-ସର୍ବସାଧାରଣଙ୍କୁ କର୍ମଚାରୀମାନେ ବହୁତ ହଇରାଣ କରୁଥିଲେ ।

ବ୍ୟକ୍ତି ସ୍ୱାଧୀନତା ନଥିଲା । ସରକାରଙ୍କ ନୀତି ଉପରେ ସମାଲୋଚନା କିବା ପ୍ରତିବାଦ କଲେ ସଙ୍ଗେ ସଙ୍ଗେ କଠିନ ଦଣ୍ଡ ବା ମୃତ୍ୟୁ ପୁରସ୍କାର ଦିଆଯାଉଥିଲା । ଗରୀବ ଜନସାଧାରଣ ବଡ଼ ଦୁଃଖ କଷ୍ଟରେ ସମୟ ନେଉଥିଲେ । କିନ୍ତୁ ଉପାୟ କିଛି ନଥାଏ । ସମସ୍ତ ଶକ୍ତି, ସାମର୍ଥ ତ ଇଂରେଜ ସରକାରଙ୍କ ହାତରେ । ସବୁ ଜିନିଷର ପୁଣି ସୀମା ଥାଏ । ଅତି ହୋଇଗଲେ, ମଣିଷକୁ ଉପାୟ ବାହାର କରିବାକୁ ପଡ଼େ । ସବୁ ଅସନ୍ତୁଷ୍ଟ ଲୋକେ ମିଶି ମେଳି ବାନ୍ଧନ୍ତି ।

ସେହିପରି ଇଂରେଜ ଅମଳରେ ବଲାଙ୍ଗୀର ଜିଲ୍ଲାର ସୋନପୁର ଥିଲା—ଗୋଟିଏ ଗଡ଼ଜାତ ରାଜ୍ୟ । ଏହି ରାଜ୍ୟର ନାମକୁ ମାତ୍ର ରାଜା, ଇଂରେଜ ସରକାରଙ୍କ ଦ୍ୱାରା ପରିଚାଳିତ ହେଉଥିଲେ । ସେଠାରେ ଏକ ପ୍ରକାର ଅନ୍ଧାରୀ ଶାସନ ଚାଲୁଥାଏ । ଜନସାଧାରଣ ଏହି କଳାଶାସନରେ

ବଡ଼ ଦୁଃଖରେ ଥା'ନ୍ତି । ଦିନକୁ ଦିନ ଏହି ଅନ୍ୟାୟ, ଅତ୍ୟାଚାର ଜୋର ଜବରଦସ୍ତି ବଢ଼ି ଚାଲୁଥାଏ ।

ଲୋକେ ଆଉ କେତେଦିନ ନୀରବ ହୋଇ ସହିବେ ? ଅଶାନ୍ତିର ନିଆଁ ଜଳି ଉଠିଲା । ଏତିକିବେଳେ ହଠାତ୍ ଗରୀବ ପ୍ରଜାଙ୍କ ଉପରେ ଖଜଣା-କର ବଢ଼ାଇ ଦିଆଗଲା । ପ୍ରଜାକୁଳ ମଧ୍ୟରେ ହାହାକାର ପଡ଼ିଗଲା । ଦୀର୍ଘ ଦିନର ସଞ୍ଚିତ ଅଶାନ୍ତି ଆଗ୍ନେୟଗିରି ପରି ସରକାରଙ୍କ ସମସ୍ତ ବାଧାକୁ ପୋପାଡ଼ିଦେଇ ପଦାକୁ ବାହାରି ପଡ଼ିଲା । ୧୯୪୨ ମସିହା ଜାନୁଆରୀ ମାସରେ ଅସନ୍ତୁଷ୍ଟ ଜନତାର ଏକ ବିରାଟ ପଟୁଆର ବାହାରିଲା । ସରକାରଙ୍କର ଅନ୍ୟାୟ, ଜୁଲୁମର ପ୍ରତିବାଦ କରି ବିଭିନ୍ନ ସ୍ଲୋଗାନ ଦିଆଗଲା । ପଟୁଆର ଥାନା ଆଡ଼କୁ ମାଡ଼ି ଚାଲିଲା ।

ପଟୁଆରର ଆଗରେ ଥିଲା—ଜଣେ ଧୁଡ଼ୁଧୁଡ଼ୁ ବୁଢ଼ୀଟିଏ । ଅଣ୍ଟା ନଇଁ ଯାଇଛି, ହାତରେ ତିନ୍ତୀ—ନାଆଁଟି ତା'ର ଗୁରୁବାରୀ ମେହେର । ତାକୁ ମଧ୍ୟ ବଢ଼ିଲା ଖଜଣା ବାଧିଛି । ସରକାରଙ୍କ ଅନ୍ୟାୟ-ଅନୀତି ବିରୁଦ୍ଧରେ ସେ ସ୍ୱର ଉଠେଇଛି । ସରକାର ବିରୁଦ୍ଧରେ ସ୍ଲୋଗାନ ଦେଉଛି ।

ତା'ର ସାହସ ଦେଖି ଅନ୍ୟମାନଙ୍କ ରକ୍ତ ଗରମ ହୋଇଗଲା । ନୂଆ ଉତ୍ସାହ ଆସିଲା । ବୁଢ଼ୀ ଗୁରୁବାରୀ ମେହେର ସତେ ଯେମିତି ଦୁନିଆଁକୁ ଚେତେଇ ଦେବାକୁ ଚାହେଁ, ତମେ କେବଳ ଯୁଆନ୍ ଟୋକା ଦେଶପାଇଁ ଲଢ଼େଇ କରୁନାହଁ । ତମ ପଛରେ ଆଗରେ ତମର ମାଆର ଆଶୀର୍ବାଦ ଅଛି । ସେଇ ମାଆ ଗୁରୁବାରୀ ପାଇଁ ପଟୁଆର ଖୁବ୍ ଜମିଥାଏ ।

କୌଣସି ପ୍ରକାରେ ସେ ପଣ୍ଟୁଆରଙ୍କୁ ବାଧା ଦେବାର ଉପାୟ ନ ଦେଖି ଇଂରେଜ ପୋଲିସ୍ ଅଫିସର ଗୁଳି ଚଳା ବାକୁ ନିର୍ଦ୍ଦେଶ ଦେଲେ । ପୋଲିସ୍‌ର ନିର୍ମମ ଗୁଳିଟି ଯାଇ ପ୍ରଥମେ ଗୁରୁବାରୀ ମାଆର ହୃଦୟକୁ ସ୍ପର୍ଶ କଲା । ପାକୁଆ ପାଟିରେ ମାଆ ପାଟିରୁ ବାହାରି ପଡ଼ିଲା—
"ପୋଡ଼ିଯାଉ ତମ କଳା ଶାସନ ।"

ତା'ପରେ ମାଆ ଗୁରୁବାରୀ ମାତୃଭୂମିର କୋଳରେ ଚିର ନିଦ୍ରାରେ ଶୋଇ ପଡ଼ିଲା । ଆଜି ଏଭଳି ମାଆର ନାମ ସ୍ମରଣ କଲେ, ଗର୍ବ ଅନୁଭବ କରିହୁଏ ।

ଜୟହିନ୍ଦ୍ !





ଦେଢ଼ଶହ ବର୍ଷ ତଳର କଥା । ସାରା ଦେଶରେ ଇଂରେଜଙ୍କର ଦୃଢ଼ ଶାସନ ଚାଲିଥାଏ । ହଠାତ୍ ଜୁନ୍ ମାସ ପହିଲି ଦିନ ବାଣପୁର ରାଜା ଘୋଷଣା କଲେ ଯେ, "ଆଜିଠାରୁ ବାଣପୁର ରାଜ୍ୟ ସ୍ୱାଧୀନ ହେଲା । ଇଂରେଜ ଶାସନ ଲୋପ ପାଇଲା ।" ରାଜା ଶରଣ ସିଂହଙ୍କର ମନ୍ତ୍ରୀ ଓ ସେନାଧ୍ୟକ୍ଷ ହେଲେ ଅରଙ୍ଗଗଡର ଦଳବେହେରାଙ୍କ ପୁଅ କୃତ୍ତିବାସ ପାଟ୍ଟଶାଣୀ ।

ଚାରି ତାରିଖ ଦିନ ପାଟ୍ଟଶାଣୀ ସୈନ୍ୟ ନେଇ ବାଣପୁର ଥାନା ଆକ୍ରମଣ କଲେ । ତାଙ୍କର ଆକ୍ରମଣ ଫଳରେ ପୋଲିସ୍‌ମାନେ ପ୍ରାଣ ନେଇ ଥାନା ଛାଡ଼ି ଚିଲିକା କୂଳକୁ ପଳାଇଗଲେ । ଜଣେ ପୋଲିସ୍ ନିହତ ହେଲା ।

ଆଠ ତାରିଖ ଦିନ ଟାଙ୍ଗି ଥାନା ଆକ୍ରମଣ କରା-ଯାଇଥା'ନ୍ତା । କେତେଜଣ ଦେଶଦ୍ରୋହୀ ସମସ୍ତ ପ୍ରକାର ଯୋଜନାକୁ ବିଫଳ କରିଦେଲେ । ବିଦ୍ରୋହୀ ସୈନ୍ୟ ଇଂରେଜଙ୍କ ହାତରେ ଧରା ପଡ଼ିଗଲେ । ପଞ୍ଚୁ ନାୟକ ଧରା ପଡ଼ି ଫାଶୀ ପାଇଲେ କିନ୍ତୁ ପାଟ୍ଟଶାଣୀ ଜଙ୍ଗଲରେ ଆତ୍ମଗୋପନ କରି ରହିଲେ ।

ସରକାର ବହୁ ଚେଷ୍ଟାକରି ପାଟ୍ଟଶାଣୀଙ୍କୁ ଠାବ କରିପାରିଲେ ନାହିଁ । ପାଟ୍ଟଶାଣୀଙ୍କୁ ଧରାଇ ଦେଲେ

ବହୁମୂଲ୍ୟ ପୁରସ୍କାର ମଧ୍ୟ ଘୋଷଣା କରାଗଲା । ଦେଶଦ୍ରୋହୀ ନରେନ୍ଦ୍ର ସିଂହପାଟ୍ଟଣାଣୀଙ୍କର ଶ୍ୱଶୁର । ସେ ନିଜ ଜ୍ୱାଇଁଙ୍କ ଖବର ରଖିଥିଲେ । ସେ ଥିଲେ ଇଂରେଜଙ୍କର ଜଣେ ପୋଷା କୁକୁର । ତାଙ୍କ ମନରେ ବହୁମୂଲ୍ୟ ପୁରସ୍କାରର ଆଶା ଓ ପ୍ରଭୁ ପଣିଆ ପ୍ରବଳ ହେଲା । ସେ ଏହି ପୁରସ୍କାର ପାଇବା ପାଇଁ ସୁଯୋଗର ଅପେକ୍ଷାରେ ଥିଲେ ।

ଆତ୍ମଗୋପନ କରିଥିବା ଅବସ୍ଥାରେ ପାଟ୍ଟଣାଣୀ ତାଙ୍କର ଇଷ୍ଟଦେବୀ ଉଗ୍ରତାରାଙ୍କୁ ଦର୍ଶନ ଲାଗି ଘନ ଅନ୍ଧକାରରେ ଗାଁକୁ ଆସନ୍ତି । ଏକଥା ଶଶୁରଙ୍କୁ ଜଣାଥିଲା । ଦିନେ କପଟ କରି ସେ ନିଜ ଘରକୁ ଜ୍ୱାଇଁଙ୍କୁ ଆମନ୍ତ୍ରଣ କରି ଆଣି ଇଂରେଜଙ୍କୁ ଧରାଇ ଦେଲେ ।




କୃତ୍ତିବାସ ପାଟ୍ଟଣାଣୀଙ୍କୁ ଦେଶାନ୍ତର କରି ଦିଆଗଲା । ସ୍ୱାଧୀନତାର ସ୍ୱାଦ ଯିଏ ଚାଖିଛି, ତାକୁ କ'ଣ କେହି ଅଟକାଇ ରଖିପାରିବ । ସେ କଳାପାଣିରେ ଥାଇ

ମଧ୍ୟ ଭାରତ ସ୍ୱାଧୀନତାର ସ୍ୱପ୍ନ ଦେଖୁଥିଲେ । କିନ୍ତୁ ଉପାୟ କାହିଁ ? କେମିତ ସେଠାରୁ ସେ ମୁକ୍ତି ପାଇବେ ।

ପାଞ୍ଚଶାଣୀ କେବଳ ଜଣେ ବିପ୍ଳବୀ, ଦେଶପ୍ରେମୀ ସ୍ୱାଧୀନ ଚେତା ଯୁବକ ନ ଥିଲେ । ଜଣେ ଜ୍ଞାନୀ ଭାବରେ ବିଭିନ୍ନ ବିଦ୍ୟାରେ ପାରଦର୍ଶୀ ଥିଲେ । ତା' ସଙ୍ଗେ ସଙ୍ଗେ ତନ୍ତ୍ର ଯନ୍ତ୍ର ସମ୍ପର୍କରେ ଭଲ ଜ୍ଞାନ ତାଙ୍କର ଥିଲା । ମନ୍ତ୍ର ଦ୍ୱାରା ବିଭିନ୍ନ ରୋଗକୁ ସେ ଭଲ କରିପାରୁଥିଲେ ।

କଥାରେ ଅଛି—

"ପାଠ ପଢ଼ିଥିଲେ ଭଗାରୀ ତୁମର—
କରି ନ ପାରିବେ ଖୁଣ,
ଯହିଁ ଯାଅ ତହିଁ ଆଦର ମିଳଇ—
ପାଠର ଏତକ ଗୁଣ ।"

କୃତ୍ତିବାସଙ୍କୁ ଏଇ ତନ୍ତ୍ର ମନ୍ତ୍ରପାଠ କଳାପାଣିରେ ବି ସାହାଯ୍ୟ କଲା ।

ଦିନେ କଳାପାଣି ଦ୍ୱୀପର ମୁଖ୍ୟ ଶାସକ ଦେଶାନ୍ତର ଦଣ୍ଡରେ ଦଣ୍ଡିତ ପାଞ୍ଚଶାଣୀଙ୍କ କୋଠରୀରେ ପ୍ରବେଶ କରି ତାଙ୍କର ସାହାଯ୍ୟ ଭିକ୍ଷା କଲେ । ସେ ପାଞ୍ଚଶାଣୀଙ୍କ ବିଦ୍ୟା ସମ୍ପର୍କରେ ପୂର୍ବରୁ ସୂଚନା ପାଇଥିଲେ । ମନ୍ତ୍ର ପ୍ରୟୋଗ କରି ଦ୍ୱୀପର ମୁଖ୍ୟଶାସକ କର୍ଜନ ବାଇଲ୍‌ଙ୍କ ସ୍ତ୍ରୀଙ୍କୁ ସେ ଆରୋଗ୍ୟ କଲେ ।

ଇଂରେଜମାନେ ପାଞ୍ଚଶାଣୀଙ୍କର ପରମ ଶତ୍ରୁ, ଏକଥା ସେ ଜାଣିଥିଲେ ବି ଶରଣାର୍ଥୀଙ୍କୁ ସାହାଯ୍ୟ କରିବା ମାନବଧର୍ମ ବୋଲି ଭାବି ନେଇଥିଲେ । ଏ ଘଟଣାରେ ପାଞ୍ଚଶାଣୀଙ୍କର ଉଦାରତା ଜଣାପଡ଼େ ।

କର୍ଜନ ବାଇଲଙ୍କ ସ୍ତ୍ରୀ ଆଶ୍ଚର୍ଯ୍ୟଜନକ ଭାବେ ମନ୍ତ୍ରଦ୍ୱାରା ଭଲ ହୋଇଯିବାରୁ ସେ ପାଞ୍ଚଶାଣୀଙ୍କ ନିକଟରେ ଗଭୀର କୃତଜ୍ଞତା ଜଣାଇଲେ, ଯଥେଷ୍ଟ ସମ୍ମାନ ପ୍ରଦର୍ଶନ କଲେ । ଶେଷରେ ସେ କହିଲେ—"ମୁଁ ତୁମ ନିକଟରେ ଋଣୀ । ତୁମେ ଯାହା ଚାହିଁବ, ମୁଁ ତାହା ପୂରଣ କରିବାକୁ ପ୍ରସ୍ତୁତ ଅଛି । ମୋତେ ତୁମର ଆକାଂକ୍ଷିତ ପଦାର୍ଥ ମାଗ । ଯଦି ଚାହିଁବ, ମୁଁ ତୁମକୁ ଏ ଦ୍ୱୀପରୁ ମୁକ୍ତି ମଧ୍ୟ ଦେଇପାରିବ ।"

ମିଷ୍ଟର ବାଇଲ୍ ଭାବିଥିଲେ—ବିପ୍ଳବୀ କୃତ୍ତିବାସ କଳାପାଣିରୁ ମୁକ୍ତି ହିଁ ଚାହିଁବ । କିନ୍ତୁ ଆଶ୍ଚର୍ଯ୍ୟର କଥା, କୃତ୍ତିବାସ ଗୋଟାଏ ଖୋଲା ହସ ହସି କହିଲେ—'ମୋତେ ଆପଣ ମୋ ଶ୍ୱଶୁର ନରେନ୍ଦ୍ର ସିଂହର କଟା ମୁଣ୍ଡ ଦେଇ ପାରିବେ ? ତେବେ ଯାଇ ମୁଁ ଓଡ଼ିଶାକୁ ଫେରିପାରିବ ।"

ମିଷ୍ଟର ବାଇଲ୍ ହାର ମାନିଗଲେ । ଏହା କ'ଣ ସମ୍ଭବ ? ନରେନ୍ଦ୍ର ସିଂହ ବର୍ତ୍ତମାନ ଇଂରେଜମାନଙ୍କର ପରମ ଭକ୍ତ, ପୁଣି ତୁମର ଶ୍ୱଶୁର । ବାଇଲ୍ ମନେ ମନେ ଭାବୁଥିଲେ—ସତରେ ପାଞ୍ଚଶାଣୀ ଗୋଟାଏ ମହାବଳ ବାଘ । କି ଭୀଷଣ ଏ ବାଣପୁର ମହାବଳ ବାଘ !

ଜୟହିନ୍ଦ୍ !







ଓଡ଼ିଶାର ସମ୍ବଲପୁର ଅଞ୍ଚଳର ଅଧିବାସୀମାନେ ଘୋର ଶାନ୍ତିପ୍ରିୟ । ଇଂରେଜ ଶାସନ ପୂର୍ବରୁ ଯେଉଁ ଶାସକମାନେ ପ୍ରଜାପାଳନ କରୁଥିଲେ, ସେମାନେ ଜମିଦାର ଓ ଗଉନ୍ତିଆମାନଙ୍କ ସହ ଭଲ ସମ୍ପର୍କ ରଖୁଥିଲେ ଏବଂ ପ୍ରଜାମାନଙ୍କୁ ଭଲ ପାଉଥିଲେ । ତେଣୁ ରାଜା, ପ୍ରଜା, ଜମିଦାର ଓ ଗଉନ୍ତିଆ ସମସ୍ତେ ସୁଖରେ ଥିଲେ ।

ସମ୍ବଲପୁର ଇଂରେଜ ଶାସନାଧୀନ ହେବାପରେ ସେଠାରେ ଅଶାନ୍ତିର ନିଆଁ ଜଳିଉଠିଲା । ଇଂରେଜଙ୍କର ବୋଲକରା ରାଜା ନାରାୟଣ ସିଂହ ଶାସନଭାର ଗ୍ରହଣ କରିବା ପରେ ପ୍ରଜାମାନଙ୍କ ଉପରେ ଅକଥନୀୟ ଅତ୍ୟାଚାର ଆରମ୍ଭ କରିଦେଲେ । ଜମିଦାର ଓ ଗଉନ୍ତିଆ-ମାନଙ୍କୁ ସେ ହୀନ ଦୃଷ୍ଟିରେ ଦେଖି ଘୃଣା କଲେ । ଏହି କାରଣରୁ ଅଶାନ୍ତି କୁହୁଳି କୁହୁଳି ସରକାରଙ୍କ ବିରୁଦ୍ଧରେ ବିଦ୍ରୋହର ସୂତ୍ରପାତ ହେଲା ।

ବହୁ ସ୍ୱାଧୀନଚେତା ଜମିଦାର ଏଥିରେ ପ୍ରତ୍ୟକ୍ଷ ଓ ପରୋକ୍ଷଭାବେ ଅଂଶ ଗ୍ରହଣ କଲେ । ଯେଉଁ ଦୁଇଜଣ ବିଦ୍ରୋହର ମୁଖ୍ୟ ଦାୟିତ୍ୱରେ ଥିଲେ । ସେମାନେ ହେଲେ ଘେଁସ୍ ଓ ଭେଡ଼ନ୍‌ର ଜମିଦାର ।

ଘେଁସ ଜମିଦାର ମଧୁ ସିଂହଙ୍କୁ କେହି କେହି ଶ୍ରଦ୍ଧାରେ ମାଧୋ ସିଂହ କହନ୍ତି । ସେ ଅତ୍ୟାଚାରୀ ରାଜା ଓ ଇଂରେଜ ସରକାରଙ୍କ ବିରୁଦ୍ଧରେ ପ୍ରକାଶ୍ୟ ବିଦ୍ରୋହ ଘୋଷଣା କରିଦେଲେ ।

ମଧୁ ସିଂହ ସୁରେନ୍ଦ୍ର ସାଏଙ୍କ ବିପ୍ଳବରେ ମୁଖ୍ୟ ଭୂମିକା ଗ୍ରହଣ କରିଥିଲେ । ତାଙ୍କର ତିନି ବୀର ପୁତ୍ରଙ୍କ ଦ୍ୱାରା ଇଂରେଜଙ୍କ ବହୁ ସାମରିକ ସାହାଯ୍ୟ ନଷ୍ଟ କରି ଦେଇଥିଲେ ।

୧୮୫୮ ମସିହା ଜାନୁଆରୀ ମାସରେ ଜମିଦାର ମାଧୋ ସିଂହ ସହ ଇଂରେଜ ସୈନ୍ୟଙ୍କର ଯୁଦ୍ଧ ହେଲା । ଇଂରେଜ ସୈନ୍ୟବାହିନୀ ମାଧୋସିଂହଙ୍କର ଏଗାର ଜଣ ବିଦ୍ରୋହୀ ସୈନ୍ୟଙ୍କୁ ହତ୍ୟା କରିଦେଲେ । କ୍ୟାପ୍‌ଟେନ୍ ସେଲ୍‌ସପିୟର ସିଂଘୋଡ଼ା ଘାଟି ଯୁଦ୍ଧରେ ଜୟଲାଭ କରିଗଲେ । ଅଳ୍ପଦିନ ପରେ ବୀର ସୁରେନ୍ଦ୍ର ସାଏ ତାଙ୍କର ସହଯୋଗୀ 'ବିପ୍ଳବୀମାନଙ୍କ ସାହାଯ୍ୟରେ ଏହି ସିଂଘୋଡ଼ା ଘାଟିକୁ ଉଦ୍ଧାର କରିଥିଲେ ।



ଏହି ସମୟରେ ସମ୍ବଲପୁର ରାଜ୍ୟରେ କମିଶନର ଭାବେ କର୍ଣ୍ଣେଲ ଫଷ୍ଟ୍‌ାର ଯୋଗଦାନ କଲେ । ସେ ବିପ୍ଳବୀ

ବିଦ୍ରୋହୀମାନଙ୍କୁ ଦୃଢ଼ ହସ୍ତରେ ଦମନ କରିବାକୁ ସେତିକି ଯେପରି ପ୍ରତିଜ୍ଞା କରିଥିଲେ । ନିଜ କାର୍ଯ୍ୟରେ ଯୋଗଦାନ କରିବା ପରେ ସେ ପ୍ରଥମେ ଘେଁସର ଜମିଦାର ମାଧୋ ସିଂହଙ୍କ ଘର ଉପରେ ଚଢ଼ାଉ କଲେ । ଘେଁସ ଦୁର୍ଗ ଆକ୍ରମଣ କରି ମାଧୋ ସିଂହଙ୍କର ପ୍ରଭୂତ କ୍ଷତି କଲେ ।

ମାଧୋ ସିଂହଙ୍କର ତିନିଜଣ ବୀର ପୁତ୍ର ଶତ୍ରୁ ପକ୍ଷର ପ୍ରବଳ ଗୁଳିଗୋଳାର ସମ୍ମୁଖୀନ ହେଲେ । ବିପ୍ଳବୀ ମାଧୋସିଂହ ଗୁଳିମାଡ଼ରେ ଆହତ ହୋଇ ଗିରଫ ହେଲେ । ଘେଁସ ଜମିଦାରୀ ଇଂରେଜଙ୍କ ହାତକୁ ଚାଲିଗଲା ।



ବିଚାର ଚାଲିଲା । ମାଧୋ ସିଂହଙ୍କୁ ଫାଶୀ ଆଦେଶ ହେଲା । ତାଙ୍କର ଫାଶୀପରେ ତାଙ୍କର ବୀରପୁତ୍ର ବୈରି ସିଂହଙ୍କୁ ୧୮୬୦ରେ ଫାଶୀ ଦିଆଗଲା । ଅନ୍ୟ ଦୁଇପୁତ୍ର ସମ୍ବଲପୁର ଜେଲରେ ପ୍ରାଣତ୍ୟାଗ କଲେ । ଗୋଟିଏ ପରିବାରର ଚାରିଜଣଯାକ ଶହୀଦ ହୋଇଗଲେ । ତାଙ୍କର ସାହସ, ତ୍ୟାଗ, ଦେଶପ୍ରେମ ଯୁଗ ଯୁଗ ପାଇଁ ଭାରତ-ବାସୀଙ୍କୁ ପ୍ରେରଣା ଯୋଗାଉଥିବ । ସେମାନେ ମରି ମଧ୍ୟ ଚିର ଅମର ହୋଇ ରହିଥିବେ ।

ଜୟହିନ୍ଦ୍ !





ମୁକ୍ତ ଆକାଶର ପକ୍ଷୀ କେବେ ପଞ୍ଜୁରୀ ଭିତରେ ରହିବାକୁ ଚାହେଁନା । ପଞ୍ଜୁରୀ ସୁନାର ହେଉ ବା ମୋତିର ଫଳ ଖାଇବାକୁ ମିଳୁ, ସେ ତା'ପାଇଁ ବନ୍ଦୀଘର ।

ସେହିପରି କର୍ମଠ, ଆତ୍ମନିର୍ଭରଶୀଳ, ସ୍ୱାଭିମାନୀ, ସ୍ୱାଧୀନଚେତା ମଣିଷ କେବେ କାହାର ଅଧୀନରେ ରହିବାକୁ ଚାହେଁନା । ଦୁଃଖେ ହେଉ ବା ସୁଖେ ହେଉ ସେ ନିଜ ଗୋଡ଼ରେ ନିଜେ ଠିଆ ହେବାକୁ ଚେଷ୍ଟା କରେ ।

ଯୁଗ ଯୁଗ ଧରି ଆଦିବାସୀମାନେ ବଣ ଜଙ୍ଗଲରେ ବସବାସ କରି ଆସୁଛନ୍ତି । ସେମାନେ ଯୋଗ୍ୟ ଲୋକକୁ ଦେଖି ସର୍ଦ୍ଦାର କରନ୍ତି, ତାକୁ ହିଁ ମାନନ୍ତି । କାହାରି ଅନ୍ୟାୟ ଅନୀତିକୁ ସହିପାରନ୍ତି ନାହିଁ ।

୧୮୮୦ ମସିହାର କଥା । ଇଂରେଜ ସରକାର ଶାସନ କରୁଥାଏ । ଗାଁ' ଗଣ୍ଡା-ବଣ ଜଙ୍ଗଲରେ ତାଙ୍କର ଅନ୍ୟାୟ ଅତ୍ୟାଚାର ବଢ଼ି ଚାଲିଥାଏ ।

କୋରାପୁଟ ଜିଲ୍ଲାର ମୋଟୁ ଅଞ୍ଚଳରେ କୋୟା ଜାତିର ଆଦିବାସୀ ରହନ୍ତି । ସିଲେରୁ, ଶାବେରୀ ନଦୀ ସେଇଠି ଗୋଦାବରୀରେ ମିଶିଛନ୍ତି । ଗୋଟିଏ ପାଖେ ଆନ୍ଧ୍ର ପ୍ରଦେଶ, ଅନ୍ୟ ପାଖରେ ମଧ୍ୟପ୍ରଦେଶ । ଇଂରେଜ

ସରକାରଙ୍କ କର୍ମଚାରୀ ମୋଣ୍ଟୁ ଅଞ୍ଚଳରେ ପହଞ୍ଚି ସରଳ ଆଦିବାସୀଙ୍କ ଠାରୁ ଜୋର୍ ଜବରଦସ୍ତ ଜିନିଷପତ୍ର ନେବା ଆରମ୍ଭ କଲେ । ତାଙ୍କର ଅତ୍ୟାଚାର ଅସହ୍ୟ ହେଲା । କୋୟାମାନେ ଏହାର ପ୍ରତିକାର ପାଇଁ ଚିନ୍ତା କଲେ । ଆଦିବାସୀ ଭାଷାରେ ସର୍ଦ୍ଦାରକୁ 'ଦୋରା' କହନ୍ତି ।

ମୋଣ୍ଟୁର କୋୟାମାନଙ୍କର ସର୍ଦ୍ଦାର ତାମା ଥିଲେ, ଜଣେ ସ୍ୱାଧୀନଚେତା ଯୁବକ । ଇଂରେଜଙ୍କ ଅନ୍ୟାୟ ଅତ୍ୟାଚାର ବିରୁଦ୍ଧରେ ସର୍ଦ୍ଦାର ତାମା ଦୋରାର ମନ ବିଦ୍ରୋହୀ ଉଠିଲା । ସେ ନିଜ କୋୟା ଭାଇମାନଙ୍କୁ ସୁଖ-ଶାନ୍ତିରେ ରଖିବାକୁ ଶପଥ ନେଲେ । ଏଥିପାଇଁ ଜୀବନ ଗଲେ ଯାଉ, ସେଥିପାଇଁ ଖାତିର ନାହିଁ ।

ଦିନେ ତାମାଦୋରା ସିଲେରୁ ଆଉ ଶାବେରୀ ନଦୀର ମିଳନ ସ୍ଥଳରେ ବସି ଇଂରେଜର ଅତ୍ୟାଚାରରୁ ମୁକ୍ତି ପାଇବାର ଉପାୟ ଚିନ୍ତା କରୁଥିଲେ । ତାଙ୍କୁ ଜଣା ପଡ଼ିଲା—ସିଲେରୁ ଆଉ ଶାବେରୀ ବହିଯାଉଥିଲାବେଳେ ତାମାକୁ କୁଳୁ କୁଳୁ ଶବ୍ଦରେ କହୁଛନ୍ତି—"ତମେ କ'ଣ ତାଙ୍କୁ ତଡ଼ିଦେଇପାରିବ ନି ? ସାତ ସମୁଦ୍ର ତେର ନଈ ପାରିହୋଇ ଆସିଥିବା ବଣିକ ଜାତିର କ'ଣ ତମଠାରୁ ବେଶୀ ବଳ ନା ବେଶୀ ସାହସ ?"

"ତମେ ଏକ ହୁଅ, ଆମେ ଦୁଇନଦୀ ଯେପରି ମିଳିତ ହୋଇ ଦ୍ରୁତଗତିରେ ଗୋଦାବରୀକୁ ଡେଇଁ ପଡ଼ୁଛୁ, ତମେ ସେହିପରି ମିଳିତ ଭାବେ ସଂଗ୍ରାମ କ୍ଷେତ୍ରକୁ କୁଦିପଡ଼, ଆମରିପରି ଆଗେଇ ଚାଲ ।"

ଢାମାଦୋରଙ୍କ ଦେହ ଶୀତେଇ ପଡ଼ିଲା । ସେ ଚମକି ପଡ଼ି ତାଙ୍କର ସହଯୋଗୀମାନଙ୍କୁ କହିଲେ—ଶୁଣିଲ ଭାଇ—ଏ' ନଦୀ କ'ଣ କହୁଛି ? "ନଦୀ କହୁଛି ଏକଜୁଅ, ଆଗେଇ ଚାଲ, ସଂଗ୍ରାମ କ୍ଷେତ୍ରକୁ ଡୁଦିପଡ଼ ।"

ବିଦ୍ରୋହୀ ଯୋଦ୍ଧାମାନେ ଢାମାଦୋରଙ୍କ କଥାକୁ ପୂର୍ଣ୍ଣପ୍ରାଣରେ ସମର୍ଥନ କଲେ ।

ତା'ପର ଦିନ ସକାଳର ସୂର୍ଯ୍ୟ ନାଲି କିରଣ ଦେଇ ହସି ହସି ହସିଲା । ଢାମାଦୋର ଅନୁଭବ କଲେ, ସୂର୍ଯ୍ୟ ଦେବତା କହୁଛନ୍ତି—ସ୍ୱାଧୀନତାର ନୂଆ ସକାଳ ଆସୁଛି । ମୋ'ପରି ତୁମେ ନୂଆ ତେଜ ନେଇ ଆଗେଇ ଚାଲ । କୌଣସି ବାଧା ବନ୍ଧନକୁ ନମାନି ମୋ'ପରି ନିଜ କାମ କରିଚାଲ । କାହାକୁ ଅପେକ୍ଷା କରି ନାହିଁ ।

ଢାମାଦୋର ଚିତ୍କାର କରି ଉଠନ୍ତି । ପ୍ରକୃତି ତାଙ୍କୁ ଆଗେଇ ଯିବାକୁ ନିର୍ଦ୍ଦେଶ ଦେଉଛି ।



ଢାମାଦୋରଙ୍କ ଆଗେଇ ଚାଲ ଡାକରାରେ ଯୋଦ୍ଧା ବିଦ୍ରୋହୀ ଦଳ ଟାଙ୍ଗିଆ, ଫାର୍ଶା, ଧନୁଶର, କୁରାଢ଼ୀ, ନଅଁ ହୁଲା ଧରି ଶତ୍ରୁର ମୁକାବିଲା କରିବାକୁ ବାହାରି

ପଡ଼ିଲେ । ଗ୍ରହୁଁ ଗ୍ରହୁଁ ଫଉଜ ଯାଇ ପଡ଼ିଆ ନିକଟ ପୋଲିସ୍ ଆଡ଼୍‌ଡ଼ାକୁ ଦଖଲ କରିନେଲେ । ପୋଲିସ୍‌ମାନେ ବାଧା ଦେବାରୁ କୋୟା ବିଦ୍ରୋହୀମାନେ ସେମାନଙ୍କୁ ଗୋଟି ଗୋଟି କରି ହତ୍ୟା କଲେ । ସମସ୍ତ ଫଉଜ ଏକ ସ୍ୱରରେ ତାଳିଦେଇ ସ୍ଲୋଗାନ ଦେଉଥିଲେ —ଏ ରାଇଜ– ଆମର । ଆମର ରାଜା–ତାମ୍ମା ।

ତା'ପରେ ନଦୀପାର ହୋଇ କୋୟା ଫଉଜ ମାଡ଼ି ଗ୍ରଲିଲେ ଆଗକୁ । ବଣ ଜଙ୍ଗଲରେ ଥିବା ସମସ୍ତ ପ୍ରକାର ଲୋକ ତାଙ୍କ ସହିତ ସହଯୋଗ କଲେ । ଫଳରେ ତାଙ୍କର ଉତ୍ସାହ ବଢ଼ି ବଢ଼ି ଗ୍ରଲିଲା । ସମସ୍ତେ ଆଗେଇ ଗ୍ରଲିଲେ ।

ଆଗରେ ପଡ଼ିଲା—ମାଲକାନଗିରି ଥାନା । ବିରାଟ ଆଦିବାସୀ ବିଦ୍ରୋହୀ ବାହିନୀକୁ ଦେଖି ପୋଲିସ୍‌ମାନେ ଜୀବନ ବିକଳରେ ଥାନା ଛାଡ଼ି ଚୁପ୍‌ଗ୍ରପ୍ ରହିଲେ । ବୀର ଦର୍ପରେ ତାମାଦୋରା କଂଗ୍ରେସ ପତାକାକୁ ମାଲକାନଗିରି ଥାନା ଉପରେ ଉଡ଼ାଇ ଦେଲେ । ସେଇଠି ସେମାନେ ପ୍ରକୃତରେ ସ୍ୱାଧୀନତାର ସ୍ୱାଦ ଗ୍ରଖିଲେ । ତା'ପରଦିନ ସେମାନେ ମୋଟୁ ଅଧିକାର କରିବାକୁ ସ୍ଥିର କଲେ ।

ତାମାଦୋରା ତାଙ୍କର ସହକର୍ମୀମାନଙ୍କ ସହ ମୋଟୁରେ ପହଞ୍ଚିବା ପୂର୍ବରୁ ଏ ଖବର ହାଇଦ୍ରାବାଦଠାରେ ଇଂରେଜ ସେନାଧ୍ୟକ୍ଷ କର୍ଣ୍ଣେଲ ମ୍ୟାକ୍‌ଓ୍ୱାର୍ଡ଼ଙ୍କ ପାଖରେ ପହଞ୍ଚିଗଲା ।

ସେନାଧ୍ୟକ୍ଷ ତାମାଦୋରାଙ୍କ ଥାନା ଅଧିକାର ଖବର ଶୁଣି ଆଶ୍ଚର୍ଯ୍ୟ ହୋଇ କହିଲେ—"ସାମାନ୍ୟ ବଣୁଆ ଲୋକଟା ତାମାର ଏତେ ସାହସ ?" ଶୀଘ୍ର ଏହାର ପ୍ରତିକାର କରିବାକୁ ପଡ଼ିବ । ନଚେତ୍ ଜଙ୍ଗଲର ନାଆଁ ପରି

ବିଦ୍ରୋହ ସାରା ରାଜ୍ୟରେ ବ୍ୟାପିଯାଇପାରେ । ତେଣୁ ସେ କାଳବିଳମ୍ବ ନ କରି ସଦଳବଳେ ଆସି ସେଠାରେ ପହଞ୍ଚିଲେ । ଉଚ୍ଚା ପାହାଡ଼ ଉପରୁ କଣ୍ଲେନେଲ ଦେଖିଲେ—କଳା ମଚ୍ ମଚ୍, ଫୁଙ୍ଗୁଳା ଦେହ, ବଳିଷ୍ଠ କୋନ୍ଧ ବାହିନୀ ମୋଟଥାନା ଆଡ଼କୁ ମାଡ଼ି ଆସୁଛନ୍ତି ।

ଅଳ୍ପ ସମୟ ଭିତରେ ସେମାନେ ଥାନା ଅଧିକାର କରିନେଲେ । ସେ କ'ଣ କରିବେ, ସ୍ଥିର କରିପାରିଲେ ନାହିଁ । ସୈନ୍ୟବାହିନୀକୁ ଗୁଳି ବର୍ଷଣ ପାଇଁ ଆଦେଶ ଦେଇଦେଲେ ।

ଗୁଡ଼ୁଁ ଗୁଡ଼ୁଁ ଇଂରେଜ ସୈନ୍ୟଙ୍କର ବନ୍ଧୁକଗୁଳି ବିଦ୍ରୋହୀ କୋନ୍ଧ ଫଉଜ ଉପରେ ଅକାଡ଼ ହୋଇପଡ଼ିଲା । ଶାଟେବରୀ-ସିଲେରୁ ନଦୀ ଜଳ ରକ୍ତବର୍ଣ୍ଣ ହୋଇଗଲା ।



ଡାମାଦୋରା ବୀରତ୍ୱ ସହ ଘୋଡ଼ାରେ ଚଢ଼ି ସେନାଧ୍ୟକ୍ଷଙ୍କୁ ତୀର ବିନ୍ଧିବା ପାଇଁ ନିଶାଣ କରୁଥିବା-ବେଳେ, ଶତ୍ରୁ ପକ୍ଷରୁ ଗୋଟାଏ ଗୁଳି ଆସି ତାଙ୍କ ହାତରେ

ବାଜିଲା । ଧନୁତୀର ସହ ତାମା ଘୋଡ଼ା ଉପରୁ ଖସିପଡ଼ି ଗିରଫ ହେଲେ ।

ସେନାଧ୍ୟକ୍ଷ ତାମାଦୋରାଙ୍କୁ ଇଂରେଜଙ୍କର ବଶ୍ୟତା ସ୍ୱୀକାର କରିବାକୁ ବାଧ୍ୟ କରିଥିଲେ । ଇଂରେଜଙ୍କୁ ତାଙ୍କର ଶାସକ ବୋଲି ସେ ଜୀବନ ଥିବାଯାକ ସ୍ୱୀକାର କଲେ ନାହିଁ । ମ୍ୟାକ୍‌ଓ୍ୱାର୍ଡ଼ଙ୍କ ରିଭଲଭର ଗୁଳିରେ ତାମାଦୋରା ଜନ୍ମଭୂମି କୋଳରେ ଗଡ଼ିପଡ଼ିଲେ । ଦେଶକୁ ସ୍ୱାଧୀନ କରିବାରେ ତାମାଦୋରା ଯେଉଁ ତ୍ୟାଗ, ବୀରତ୍ୱ ପ୍ରଦର୍ଶନ କରି ଶହୀଦ ହୋଇଗଲେ । ତାହା ପରବର୍ତ୍ତୀ ସଂଗ୍ରାମ ପାଇଁ ଇନ୍ଧନ ଯୋଗାଇଥିଲା ।

ଜୟହିନ୍ଦ୍ !








ଓଡ଼ିଶା ହେଉଛି ତ୍ୟାଗଭୂମି । ଯେଉଁ କେତେଜଣ ମହାମାନବ ତାଙ୍କ ଜୀବନର ସବୁକିଛି ତ୍ୟାଗ କରି କେବଳ ଦେଇଯାଇଛନ୍ତି, ସେମାନଙ୍କ ମଧ୍ୟରେ ତାପଙ୍ଗ ଦଳବେହେରା ଅଗ୍ରଗଣ୍ୟ । ସେ ଆତ୍ମସମ୍ମାନକୁ ଜୀବନଠାରୁ ଆହୁରି ଗୁରୁତ୍ୱ ଦେଉଥିଲେ । ଏ ଜାତିର ସମ୍ମାନ, ଏ ଦେଶର ଗୌରବ, ମାତୃଜାତି ପ୍ରତି ଉଚିତ୍ ବ୍ୟବହାର ପାଇଁ ତାପଙ୍ଗ ଦଳବେହେରା ଯେଉଁ ତ୍ୟାଗ କରିଗଲେ, ସେଭଳି ଘଟଣା ବିଶ୍ୱରେ ଅନ୍ୟତ୍ର କେଉଁଠି ଘଟିନାହିଁ ।

୧୮୨୭ ମସିହାର ଘଟଣା । ଇଂରେଜ ସରକାର ସମଗ୍ର ଓଡ଼ିଶାକୁ ନିଜ ଶାସନ ଅଧୀନରେ ରଖିଥା'ନ୍ତି । ମନଇଚ୍ଛା ଅନ୍ୟାୟ, ଅତ୍ୟାଚାର, ପ୍ରଜାଙ୍କୁ ଶୋଷଣ କରୁଥା'ନ୍ତି । ଯେଉଁ ଖୋରଧା ପାଇକମାନେ ଦୀର୍ଘଦିନ ଧରି ଇଂରେଜ ସରକାରଙ୍କୁ ସ୍ୱୀକାର କରୁ ନଥିଲେ । ଶତ୍ରୁତା ଆଚରଣ କରି ଇଂରେଜଙ୍କୁ ବ୍ୟସ୍ତ କରି-ପକାଇଥିଲେ । ସେମାନେ ଆଜି ସୁପ୍ତ, ନୀରବ । ସମସ୍ତ ଶକ୍ତି, ସାହସ ସତେ ଯେମିତି ହରଣ କରି ନିଆଯାଇଛି ।

ସିଂହ ଛୁଆ ଜନ୍ତାରେ ପଡ଼ି କିଛିଦିନ ମଉନ ରହିଯାଏ । ଯେଉଁଦିନ ସେ ଶିକାରକୁ ଆଖି ଆଗରେ ପାଏ, ତା'ର ଶକ୍ତି ସାମର୍ଥ ବହୁଗୁଣ ବଢ଼ିଯାଏ । ଜନ୍ତାରୁ ବାହାରି ପଡ଼ିଲେ ତାକୁ ଆଉ କିଏ ସମ୍ଭାଳେ ?

ବନ୍ଦି ଜଗବନ୍ଧୁ ଆତ୍ମସମର୍ପଣ କରିଥିଲେ, ଅସଂଖ୍ୟ ଦେଶଭକ୍ତ ମୃତ୍ୟୁଦଣ୍ଡରେ ଦଣ୍ଡିତ ହୋଇଥିଲେ । ଫଳରେ ୧୮୧୭ ମସିହାର ବିପ୍ଳବ ଝିମେଇ ଯାଇଥିଲା । ତଥାପି ଓଡ଼ିଶା ଭୂଇଁରେ ପାଇକ ବୀର ଲୋପ ପାଇ ନଥିଲେ ।

ସୁବିଧା ସୁଯୋଗର ଅପେକ୍ଷାରେ ସେମାନେ ଉପାୟ ଖୋଜୁଥିଲେ ।

ଇଂରେଜମାନେ ଖୋରଧା ଅଞ୍ଚଳ ଦଖଲ କଲା ଦିନଠାରୁ ଖଜଣା ଆଦାୟ କରି ନେଉଥିଲେ । ଦିନେ ତାପଙ୍ଗ ଗଡ଼ର ଚିନ୍ତାମଣି ରଣସିଂହଙ୍କ ଅନୁପସ୍ଥିତିରେ ଇଂରେଜ କର୍ମଚାରୀ ଖଜଣା ବା କର ଆଦାୟ ଆଳରେ ତାଙ୍କ ସ୍ତ୍ରୀ ପ୍ରତି ଖରାପ ବ୍ୟବହାର ଦେଖାଇଲେ ।

ଏ ଖବର ବିଜୁଳିବେଗରେ ସମଗ୍ର ତାପଙ୍ଗ ଗଡ଼ରେ ଖେଳେଇ ହୋଇଗଲା ।

ବିଷଧର ନାଗସାପ ଲାଙ୍ଗୁଳରେ ଇଂରେଜ କର୍ମଚାରୀ ହାତମାରି ଦେଇଛନ୍ତି । ଫଣାଟେକି ଗର୍ଜିଉଠିଲେ — ତାପଙ୍ଗ ଗଡ଼ର ଦଳବେହେରା—ମାଧବଚନ୍ଦ୍ର ରାଉତରାୟ । କ୍ଷତ୍ରୀୟ ରକ୍ତ ତେଜି ଉଠିଲା । ଏହା କେବଳ ମାତୃଜାତି ପ୍ରତି ଅପମାନ ନୁହେଁ, କେବଳ ତାପଙ୍ଗ ଗଡ଼ ପ୍ରତି ଅବମାନନା ନୁହେଁ, ସମଗ୍ର ଓଡ଼ିଆ ଜାତିର ଉନ୍ନତ ମାନସମ୍ମାନକୁ ଯିଏ ତଳେ ପକେଇ ଦେଇଛି — ତାକୁ ନିର୍ମମ ଭାବେ ହତ୍ୟା କରିବାକୁ ଆଦେଶ ଦେଲେ ।

ତାପଙ୍ଗ ଗଡ଼ର ଶାଣିତ ତରବାରୀ ଇଂରେଜ କର୍ମଚାରୀଙ୍କ ରକ୍ତ ଚାଖିଲା । ଦଳବେହେରାଙ୍କ ବିଦ୍ରୋହ ପ୍ରବଳରୁ ପ୍ରବଳତର ହେଲା । ଦେଶ ପାଇଁ ପ୍ରାଣବଳୀ

ଦେବାକୁ ହଜାର ହଜାର ପାଇକ ଆଗେଇ ଆସିଲେ । ମଳାପଡ଼ ଗଡ, ନରଣଗଡ଼, ରାମଚଣ୍ଡୀଗଡ଼ ଓ କାଇପଦର ଗଡ଼ର ଦଳେଇମାନେ ପୂର୍ଣ୍ଣପ୍ରାଣରେ ଏହି ବିଦ୍ରୋହକୁ ସମର୍ଥନ ଓ ସହଯୋଗ କଲେ । ଫଳରେ ଇଂରେଜ ସରକାରଙ୍କ ପ୍ରଶାସକ ଅସ୍ତବ୍ୟସ୍ତ ହୋଇପଡ଼ିଲେ ।

ଚତୁର ଇଂରେଜ ପ୍ରଶାସକ ମିଥ୍ୟାର ଆଶ୍ରୟ ନେଇ ଗୁଜବ ସୃଷ୍ଟି କରାଇଲେ ଯେ, ପାଇକମାନଙ୍କ ଇଷ୍ଟଦେବୀ ହରିଶ୍ୱରୀଙ୍କୁ ଗୋ'ରକ୍ତ ଦାନ କରାଯାଇଛି । ଏହି ଗୁଜବ ସୁପରିକଳ୍ପିତ ଭାବେ ହୋଇଥିବାରୁ ପାଇକମାନେ ଏହାକୁ ବିଶ୍ୱାସ କରିନେଲେ । ତାଙ୍କର ମନୋବଳ ଭାଙ୍ଗି ପଡ଼ିଲା । ବିଦ୍ରୋହ ଝିମେଇ ଗଲା ।

ଏହି ସୁଯୋଗରେ କର୍ଣ୍ଣେଲ ହାଇକୋର୍ଟ ତୋପ, କମାଣ, ବନ୍ଧୁକ ନେଇ ବିଦ୍ରୋହୀ ସୈନ୍ୟଙ୍କ ଉପରେ ଗୁଳିବର୍ଷଣ କଲେ । ଦଳବେହେରାଙ୍କ ପାଇକ ସୈନ୍ୟ ଛତ୍ରଭଙ୍ଗ ଦେଲେ ।

ଅସହାୟ ଅବସ୍ଥାରେ ଦଳବେହେରା ଆତ୍ମଗୋପନ କରିବାକୁ ବାଧ୍ୟ ହେଲେ ।

ବିଶ୍ୱାସଘାତକ ଯୁଗେ ଯୁଗେ ରହିଥା'ନ୍ତି । ଫୁଲ ଉଗିଚାରେ ବିଛୁଆତି ଉଠିବାପରି, ସେମାନେ ଅଲୋଡ଼ା, ଅଖୋଜା ହୋଇ କେବଳ ଅପକାର କରିବାକୁ ଜନ୍ମ ହୋଇଥା'ନ୍ତି । ଅସହାୟ ହୋଇ ଆତ୍ମଗୋପନ କରିଥିବା ଅବସ୍ଥାରେ କେହି ଜଣେ ବିଶ୍ୱାସଘାତକ ଦଳବେହେରାଙ୍କ ଆଶ୍ରୟସ୍ଥଳ ଦେଖାଇ ଦେଲା ।

ସୌଭାଗ୍ୟବଶତଃ ଚତୁର ଦଳବେହେରା ଇଂରେଜ ଆଖିରେ ଧୂଳିଦେଇ ସେଠାରୁ ଖସି ଯାଇଥିଲେ । ସମସ୍ତ

ଶକ୍ତି, କ୍ଷମତା ପ୍ରୟୋଗ କରି ଇଂରେଜ ସରକାର ଦଳବେହେରାଙ୍କୁ ଧରିପାରିଲେ ନାହିଁ । ଦଳବେହେରାଙ୍କୁ ଧରି ନ ପାରିବା ଫଳରେ ନିରାଶ ହୋଇ ସରକାର ଘୋଷଣା କଲେ, ଯିଏ ତାପଙ୍ଗ ଦଳବେହେରାଙ୍କୁ ଧରାଇ ଦେବ, ତାକୁ ନଗଦ ଏକ ସହସ୍ର ମୁଦ୍ରା ପୁରସ୍କାର ଦିଆଯିବ । ଏ ଖବର ଦଳବେହେରା ଶୁଣିଲେ ।

ଏହି ପୁରସ୍କାର ଆଶାରେ କେତେ ଯେ, ଦେଶଦ୍ରୋହୀ ଦଳବେହେରାଙ୍କୁ ଖୋଜି ନଥିବେ, କହିହେବ ନାହିଁ । ଚତୁର ଦଳବେହେରା ଜଙ୍ଗଲରେ ବୁଲି ବୁଲି ବଣର ଫଳମୂଳ ଖାଇ ଝରଣା ପାଣି ପିଇ ଆତ୍ମଗୋପନ କରିଥା'ନ୍ତି ।

ଦଳବେହେରାଙ୍କୁ ଖୋଜିବା ପାଇଁ ସରକାର ଯେତେ ଯତ୍ନ କରୁଥା'ନ୍ତି । ତାଙ୍କର ଲୋକପ୍ରିୟତା ସେହି ପରିମାଣରେ ବଢ଼ୁଥାଏ । ଗାଁ' ଗହଳର ଲୋକଙ୍କ ମନରେ ଗୋଟାଏ ଧାରଣା ହୋଇଗଲା ଯେ, ଦଳବେହେରା ସାମାନ୍ୟ ମଣିଷ ନୁହଁନ୍ତି, ସେ ଗୋଟାଏ ଅସଲ ଦେବତା । ସେ ଦେବତା ଦୁଃଖୀ, ଗରୀବ ଅସହାୟ ଲୋକଙ୍କୁ ସାହାଯ୍ୟ କରନ୍ତି ।

ସତକୁ ସତ ଦିନେ ଗୋଟାଏ ମଜା ଘଟଣା ଘଟିଗଲା— "ଜଣେ କୈବର୍ତ୍ତର ଏକମାତ୍ର ଜୀବିକା ଯାହାକି—ଡଙ୍ଗାଟି ନଦୀରେ ବୁଡ଼ିଗଲା । ସେ ବିଚରା ଅସହାୟ ଅବସ୍ଥାରେ ମୁଣ୍ଡ କଚାଡ଼ି କାନ୍ଦିବାରେ ଲାଗିଲା । ତାକୁ ଗାଁ'ର ଲୋକେ କହିଲେ—ଆରେ କାନ୍ଦିଲେ କ'ଣ ହେବ, ତୁ ଦଳବେହେରାଙ୍କୁ ଯାଇ ସାହାଯ୍ୟ ଭିକ୍ଷା କର । କୈବର୍ତ୍ତ ବିଚରା ବଡ଼ ସରଳ ହୃଦୟର ଲୋକଥିଲା । ସେ ତା'ର

ଦେବତା ଦଳବେହେରାଙ୍କୁ ଖୋଜିବା ପାଇଁ ଜଙ୍ଗଲକୁ ଗଲା । ସେ ନିବିଡ଼ ଜଙ୍ଗଲରେ ଜଣେ ମଇଳା କପଡ଼ା ପିନ୍ଧିଥିବା ଲୋକକୁ ଭେଟିଲା ।

ତା'ର ଦାଢ଼ି ନଖ କେବେଠାରୁ କଟାଯାଇ ନାହିଁ । ହାତର ନଖ ସବୁ ବଢ଼ିଯାଇଛି । ଲୋକଟା ଭୟଙ୍କର ଦେଖାଯାଉଥିଲା ।

କୈବର୍ତ୍ତ ତାଙ୍କୁ ଭେଟି ପ୍ରଥମେ ଭୟ କରିଯାଇଥିଲା । ତା'ପରେ ଲୋକଟି ମଧୁର କଣ୍ଠରେ କୈବର୍ତ୍ତକୁ ପାଖକୁ ଡାକି ତା'ଠାରୁ ସବୁ କଥା ବୁଝିଲା । କୈବର୍ତ୍ତ କହିଲା—ମୋତେ ତମେ ଟିକେ ଦଳବେହେରାଙ୍କ ଘର ଦେଖାଇ ଦେଲେ ମୁଁ ତାଙ୍କଠାରୁ ସାହାଯ୍ୟ ଭିକ୍ଷା କରିବ ।

ଲୋକଟି କେତେ କ'ଣ ଚିନ୍ତା କରି କହିଲା—"ମୋ' ପଛେ ପଛେ ଆସ ମୁଁ ତମକୁ ଦଳବେହେରାଙ୍କ ଘରକୁ ନେଇଯିବି । କୈବର୍ତ୍ତ ପଛେ ପଛେ ଚାଲିଲା । ବଣଜଙ୍ଗଲ ଶେଷ ହୋଇଗଲା । ସହର ପଡ଼ିଲା । ଲୋକଟି ପଛରେ କୈବର୍ତ୍ତ ଚାଲୁଥାଏ ।

ଶେଷରେ ଲୋକଟା ଖୋରଧାର କର୍ଣ୍ଣେଲ ହାଇକୋର୍ଟଙ୍କ ଅଫିସରେ ପଶିଲା । କୈବର୍ତ୍ତ ଭୟରେ ଦୁଆରେ ଠିଆ ହୋଇଥାଏ ।

ଫିରିଙ୍ଗି ଅଫିସରଙ୍କୁ ଲୋକଟା ତା'ର ପରିଚୟ ଦେଇ କହିଲା—ମୁଁ ହେଉଛି ତାପଙ୍ଗଗଡ଼ର ଦଳବେହେରା । ଏଇ ଅସହାୟ କୈବର୍ତ୍ତଟି ମୋତେ ଧରି ଆଣିଛି । ଆପଣ

ଯେଉଁ ପୁରସ୍କାର ଘୋଷଣା କରିଥିଲେ, ତାହା ତା'ଙ୍କୁ ପ୍ରଦାନ କରନ୍ତୁ ।

ଲୋକଟା ମୁହଁରୁ ଏଭଳି କଥା ଶୁଣି ଫଉଜି ଅଫିସର ତାଙ୍କୁ ବିଶ୍ୱାସ କଲେ ନାହିଁ । ପରେ ଯେତେବେଳେ ସେମାନେ ସବୁକଥା ଶୁଣିଲେ, ସମସ୍ତଙ୍କ ମୁହଁରୁ ଅଜାଣତରେ ବାହାରି ପଡ଼ିଲା – ଧନ୍ୟ ତୁମେ ଦଳବେହେରା । ପ୍ରକୃତରେ ତୁମେ ଜଣେ ଦେବତା ।

ମହାନ୍ ତ୍ୟାଗ ପ୍ରଦର୍ଶନ କରି ଦଳବେହେରା ଆଜି ଓଡ଼ିଶା ଭୂଇଁର ସମ୍ମାନ ବଢ଼ାଇ ଅମର ହୋଇଛନ୍ତି ।

ଜୟହିନ୍ଦ୍ !








ଓଡ଼ିଶାରେ ଇଂରେଜ ଶାସନ ଦୃଢ଼ ହେବାପରେ ସେମାନେ ବିଭିନ୍ନ ରାଜ୍ୟରେ ମନଇଚ୍ଛା ଜଣେ ଜଣେ ରାଜାଙ୍କୁ ରଖିଲେ । ସେ ରାଜାମାନେ କେବଳ କ୍ଷମତା ଲୋଭରେ ଇଂରେଜମାନଙ୍କର ତୋଷାମଦ କରୁଥିଲେ । ପ୍ରଜାମାନଙ୍କର ଉପକାର ତ ଦୂରର କଥା, ପ୍ରଜାଙ୍କୁ ଶୋଷଣ କରି ଇଂରେଜଙ୍କୁ କରଦେବା ଥିଲା, ଏମାନଙ୍କ ମୁଖ୍ୟ କାମ ।

୧୮୯୧ ମସିହା ସମୟର କଥା । କେନ୍ଦୁଝର ରାଜ୍ୟରେ ଅତ୍ୟାଚାରୀ ରାଜା ଜଣେ ଇଂରେଜଙ୍କ ଦ୍ୱାରା ନିଯୁକ୍ତ ହୋଇଥା'ନ୍ତି । ତାଙ୍କର ନାମ ଧନୁଜୟ ନାରାୟଣ ସିଂହ । ତାଙ୍କର ଶାସନରେ ନିରୀହ ପ୍ରଜା ଦୁଃଖରେ ହନ୍ତସନ୍ତ ହେଉଥା'ନ୍ତି । କେନ୍ଦୁଝରର ଭୂୟାଁ ପୀଢ଼ ଓଡ଼ିଶା ବିଖ୍ୟାତ । ଏଠାକାର ଅଧିବାସୀ ଅଧିକାଂଶ ଭୂୟାଁ ସଂପ୍ରଦାୟର ଆଦିବାସୀ । ଏମାନେ କର୍ମଠ, କଷ୍ଟ ସହିଷ୍ଣୁ ଓ ବିଶ୍ୱସ୍ତ ହିସାବରେ ପରିଚିତ ।

ଥରେ ରାଜା ଘୋଷଣା କଲେ ଯେ, "ପ୍ରଜାମାନଙ୍କ ହିତ ଦୃଷ୍ଟିରୁ କେନାଲ ଖୋଳାଯିବ । ଏହି କେନାଲ ପାହାଡ଼ ଭିତର ଦେଇଯିବ, ସମସ୍ତ ଭୂୟାଁ ଆଦିବାସୀ ମାଗଣାରେ ଏହି କେନାଲ ଖୋଳିବେ । ବେଠିରେ ଯିଏ କାମ ନ କରିବ, ତା'କୁ କଠିନ ଦଣ୍ଡ ଦିଆଯିବ । ଯିଏ କାମରେ ଠକିବ, ... ଯିବ,

ତା'ଙ୍କୁ ରାଜକର୍ମଚାରୀ ଧରିଆଣି ଉପଯୁକ୍ତ ଶାସ୍ତି ଦେବେ । ତେଣୁ ସମସ୍ତେ ଏହି କେନାଲ ଖୋଳିବାକୁ ବାଧ୍ୟ ହେବେ ।"

ପ୍ରଜାଙ୍କ ହିତପାଇଁ ଖୋଳା ଯାଉଥିବା କେନାଲ ପ୍ରଜାଙ୍କର ବିପଦର କାରଣ ହେଲା । ରାଜାଙ୍କ ଆଦେଶକୁ ମାନି ଲୋକ ଉପାସରେ ଗରିବ ନିରୀହ ଭୂୟାଁମାନେ ବାଧ୍ୟ ହୋଇ କେନାଲ ଖୋଳା କାମରେ ଲାଗିଲେ । ଲୁଚି ଛପି ଖସିଯିବାର ମଧ୍ୟ ଉପାୟ ନାହିଁ । ଭୂୟାଁ ବୁଝି ମନେ କଲେ, ଏଇ କେନାଲରେ ହିଁ ତାଙ୍କର ଜୀବନ ଯିବା ନିଶ୍ଚିତ ।

ରାଜା ତ ଇଂରେଜ ସରକାରଙ୍କ ବଳରେ ବଳୀୟାନ । କିଏ ବା ଏହାର ପ୍ରତିବାଦ କରିବ ? ଦିନକୁ ଦିନ ଭୂୟାଁ-ମାନଙ୍କର ଅବସ୍ଥା ଖରାପ ହେଲା ।

ସେଇ ସମୟରେ ରାଜାଙ୍କ ଅନୁଗ୍ରହ ଅନୁଦାନ ପାଇ ଧରଣୀଧର ଭୂୟାଁ କଟକରେ ସର୍ଭେସ୍କୁଲ ପାଠ ଶେଷ କରିଥା'ନ୍ତି । ସେ ରାଜାଙ୍କ ଅଧୀନରେ ଜଣେ ସର୍ଭେୟର ଭାବେ ନିଯୁକ୍ତ ପାଇଥା'ନ୍ତି । ସେ ଯିନା ପେଟ ପାଇଁ ରାଜାଙ୍କ ପାଖରେ ଚାକିରୀ କରୁଥା'ନ୍ତି । କିନ୍ତୁ ରାଜାଙ୍କର ଅନ୍ୟାୟ ଅତ୍ୟାଚାର ଦେଖି ତାଙ୍କ ମନ ଖରାପ ହୋଇଯାଉଥାଏ । ହୃଦୟ ତାଙ୍କର ବିଦ୍ରୋହୀ ଉଠୁଥାଏ । କିନ୍ତୁ ଉପାୟ କାହିଁ ?

ମନଥିଲେ ଉପାୟ ଆପେ ଆପେ ଆସି ପହଞ୍ଚିଯାଏ । ଭୂୟାଁମାନେ ଧରଣୀଧରଙ୍କର ନିଜ ଲୋକ, ସେମାନେ ତାଙ୍କର ଦାଦା, ମଉସା, ଭାଇ । ସେ କିପରି ନୀରବ ହୋଇ ରହିପାରିବ ।

ଅନ୍ୟାୟର ଶିକାର ହୋଇଥିବା ଭୂୟାଁମାନଙ୍କ ସହ ସେ କଥାବାର୍ତ୍ତା ହୋଇ ମେଳ ଗଠନ କଲେ । ଭୂୟାଁମାନେ ତ ସରଳ ପ୍ରକୃତିର । ନଷ୍ଟବଢ଼ିବେଳେ କୁଟାଖିଏକୁ ଭରସା କଲାପରି ସେମାନେ ଧରଣୀ ଧରକୁ ଭରସା କରି ମନରେ ସାହସ ବାନ୍ଧିଲେ । ତାଙ୍କୁ ହିଁ ନିଜର ସର୍ଦ୍ଦାର କରିନେଲେ । ଏଣିକି ଧରଣୀଧରର ଦାୟିତ୍ୱ ବଢ଼ିଗଲା ।

ସେ ଭୂୟାଁ ମେଳ ତରଫରୁ ଘୋଷଣା କଲେ—
"ରାଜା ଏ' ଅନ୍ୟାୟ ଅତ୍ୟାଚାର ଶୀଘ୍ର ବନ୍ଦ କରନ୍ତୁ ।"

ଦିନେ ଧରଣୀଧରଙ୍କ ନେତୃତ୍ୱରେ ଏକ ବିରାଟ ଭୂୟାଁମେଳଆ ରାଜଉଆସକୁ ଘେରାଉ କରିବାକୁ ସ୍ଥିର କଲେ ।

ଭୟାଳୁ ଅତ୍ୟାଚାରୀ ରାଜା ଏ ଖବର ପାଇ ନିଜ ପରିବାର ବର୍ଗଙ୍କୁ ଛାଡ଼ି ନିଜ ପ୍ରାଣ ନେଇ କଟକ ପଳାଇ ଗଲେ । ସେଠାରୁ ସେ କମିଶନର ଟୟୁବିନ୍ ସାହେବଙ୍କୁ ସାହାଯ୍ୟ ମାଗିଲେ । କମିଶନର ଏହାର ପ୍ରତିକାର ପାଇଁ ବାଲେଶ୍ୱରର ପୋଲିସ୍ ସୁପରିଟେଣ୍ଡେଣ୍ଟଙ୍କୁ କେନ୍ଦୁଝର ପଠାଇଲେ ।

ପୋଲିସ୍ ସୁପରିଟେଣ୍ଡେଣ୍ଟ୍ ଗାଇସ୍ ସାହେବ ସେଠାରେ ପହଞ୍ଚିବା ପୂର୍ବରୁ ସରକାରଙ୍କଠାରୁ ଜରୁରୀ ବାର୍ତ୍ତା ପାଇ ସେନାଧ୍ୟକ୍ଷ ଡସନ୍ ପହଞ୍ଚିଗଲେ ।

କେନ୍ଦୁଝରର ଦରାଗିରି ପର୍ବତଶ୍ରେଣୀ ବିଦ୍ରୋହୀ ଭୂୟାଁମାନଙ୍କର ଆଶ୍ରୟ ସ୍ଥଳ ଥିଲା । ସେଠାରେ କୁଡ଼ିଆ କରି ସେମାନେ ବାସ କରୁଥିଲେ ।

ସେନାଧ୍ୟକ୍ଷ ଡସନ୍ଙ୍କ ନେତୃତ୍ୱରେ ଇଂରେଜ ସରକାରଙ୍କ ସିପାହୀ କୁଡ଼ିଆରେ ନିଆଁ ଲଗାଇ ଦେଲେ ।

ଭୂୟାଁ ସର୍ଦ୍ଦାର ଧରଣୀଧରଙ୍କୁ ଗିରଫ କରିନେଲେ । ଏଭଳି ପରିସ୍ଥିତି ଦେଖି ଭୂୟାଁମାନେ ଭୀଷଣ ରାଗିଗଲେ । ସେମାନେ ଧନୁ ତୀର ଧରି ଶତ୍ରୁମାନଙ୍କୁ ଆକ୍ରମଣ କଲେ । କିନ୍ତୁ ସେମାନେ ପୋଲିସ୍ ହାତରେ ବନ୍ଦୀ ହୋଇଗଲେ ।



କେନ୍ଦୁଝରର ଭୂୟାଁ ମେଳି ସେଇଠାରେ ହାରି ମାନିଗଲା । ପ୍ରବଳ ପରାକ୍ରମୀ ଇଂରେଜ ସରକାରଙ୍କ କଡ଼ା ଦୃଷ୍ଟି ଆଉ ଭୂୟାଁମାନଙ୍କୁ ଉଠିବାକୁ ସୁଯୋଗ ଦେଲା ନାହିଁ ।

ବିପ୍ଲବୀ ଧରଣୀଧର ଆଜି ନାହାନ୍ତି । ସେ ଭୂୟାଁମାନେ ବି ନାହାନ୍ତି । ତାଙ୍କର ଆନ୍ଦୋଳନ, ଅନ୍ୟାୟ, ଅତ୍ୟାଚାର ବିରୁଦ୍ଧରେ ପ୍ରତିବାଦ ଓ ତ୍ୟାଗ ନିଷ୍ଠା ପାଇଁ ସେ ଆଜି ଅମର ହୋଇ ଓଡ଼ିଶା ତଥା ଭାରତ ଇତିହାସର ପୃଷ୍ଠାକୁ ଉଜ୍ଜ୍ୱଳ କରିଛନ୍ତି ।

ଜୟହିନ୍ଦ୍ !





ମୁଜାଫରପୁର ବୋମାକାଣ୍ଡ କାରଣରୁ ଭାରତର ଅସଂଖ୍ୟ ନିରୀହ ଲୋକଙ୍କୁ ଇଂରେଜ ସରକାର ଗିରଫ କରିଥା'ନ୍ତି । ସେମାନଙ୍କ ସହିତ କହ୍ନାଇଲାଲ ଦତ୍ତ ମଧ୍ୟ ଗିରଫ ହୋଇ ଅଲିପୁର ଜେଲରେ ଭର୍ତ୍ତି ହେଲେ । ସେ ବି. ଏ. ପାସ୍ କରିବା ପରେ କଲିକତା ଆସି କ୍ରାନ୍ତିକାରୀ ଦଳରେ ମିଶିଥିଲେ । ନିଜର ନିଷ୍ଠା ଓ ବୀରତ୍ୱ ପ୍ରଦର୍ଶନ କରି ସେ ଖୁବ୍ କମ ଦିନ ମଧ୍ୟରେ ଦଳର ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କଲେ । କ୍ରାନ୍ତିକାରୀମାନଙ୍କର ସଙ୍ଗଠନ ପାଇଁ ସେ ଚନ୍ଦ୍ରନଗର ଯାଇ ଚଟ୍ଟଗ୍ରାମ ଆଦି ସ୍ଥାନ ବୁଲି ସେଠାରେ ବୋମା ଓ ଦେଶୀ ବନ୍ଧୁକ ତିଆରି କରିବା ଶିଖିଥିଲେ ।



କହ୍ନାଇଲାଲ ଜେଲରେ ଥାଇ ମଧ୍ୟ ଖୁବ ସତେଜ ଥାଆନ୍ତି । ସେ ହସଖୁସି କରି ଜୀବନ କାଟୁଥିଲେ । ସେଠାରେ ଥାଇ ସେ ଶୁଣିଲେ, ନରେନ୍ଦ୍ର ଗୋସାଇଁ ଇଂରେଜ ସରକାରଙ୍କର ସାକ୍ଷୀ ହୋଇଛନ୍ତି । ଏ କଥା ଶୁଣି ତାଙ୍କର ରକ୍ତ ଟକମକ୍ ହୋଇ ଫୁଟି ଉଠିଲା । ସେ ପ୍ରତିଜ୍ଞା କଲେ, ବିଶ୍ୱାସଘାତକ ଦେଶଦ୍ରୋହୀ ନରେନ୍ଦ୍ର ଗୋସାଇଁଙ୍କୁ ନିଶ୍ଚୟ ଯମପୁର ପଠାଇବେ । କୌଶଳ କରି ପେଟ ବେମାରୀର ଛଳନା କରି ସେ ଡାକ୍ତରଖାନାରେ ଭର୍ତ୍ତି ହୋଇଗଲେ ।

କହ୍ନାଇଲାଲଙ୍କର ଜଣେ ଅନ୍ତରଙ୍ଗ ବନ୍ଧୁ ସତ୍ୟେନ୍ଦ୍ର ବସୁ ମଧ୍ୟ ଅନ୍ୟ ଏକ ବେମାରର ଛଳନା କରି ଡାକ୍ତରଖାନାକୁ ଆସିଗଲେ ।

ଦିନେ ସତ୍ୟେନ୍ ବସୁ ନରେନ୍ଦ୍ର ଗୋସାଇଁଙ୍କ ସହ ମିଶି ସରକାରୀ ସାକ୍ଷୀ ହେବାକୁ ରାଜି ହେବାର ଛଳନା କଲେ । ଏକଥା ଶୁଣି ଗୋସେଇଁ ଭାରି ଖୁସି ହେଲେ । ଜଣେ ବିଦେଶୀ ଦେହରକ୍ଷୀ ସହିତ ସେ ସତ୍ୟେନ୍ଙ୍କ ସହ ସାକ୍ଷାତ୍ କରିବାକୁ ଆସିଲେ । ସୁବିଧା ଦେଖି ସତ୍ୟେନ ଗୋସେଇଁଙ୍କୁ ହଠାତ୍ ଆକ୍ରମଣ କଲେ । ଦେହରକ୍ଷୀ ଜୀବନ ନେଇ ଧାଇଁ ପଳାଇଲା । ସେତିକବେଳେ କହ୍ନାଇଲାଲଙ୍କ ବନ୍ଧୁକ ଗର୍ଜି ଉଠିଲା । ଗୋସେଇଁଙ୍କ ଶବ ତଳେ ଟଳି ପଡ଼ିଲା ।

ଗୋସେଇଁ ଯଦି ସରକାରୀ ସାକ୍ଷୀ ହୋଇଥା'ନ୍ତା, ତା'ହେଲେ କ୍ରାନ୍ତିକାରୀ ଦଳ ମହାବିପଦରେ ପଡ଼ିଥା'ନ୍ତା । ଦେଶଦ୍ରୋହୀ ଗୋସେଇଁଙ୍କୁ ହତ୍ୟାକରି ଉଚିତ୍ କାର୍ଯ୍ୟ କରି ସେ ଫାଶୀ ଦଣ୍ଡ ପାଇଲେ । ଅଦାଲତରେ ସେ ନିଜର

ଫାଶୀ ଦଣ୍ଡ ପାଇବା କଥା ଶୁଣି ଠୋ ଠୋ ହୋଇ ହସି ଉଠିଲେ । ଇଂରେଜ ଜଜ ଆଶ୍ଚର୍ଯ୍ୟ ହୋଇ କହ୍ନାଇଲାଲଙ୍କୁ ଅନାଇ ରହିଲେ ।



୧୯୦୮ ନଭେମ୍ବର ୧୦ ତାରିଖରେ 'ବନ୍ଦେ ମାତରମ' ମହାମନ୍ତ୍ର ଧ୍ୱନି କରି କହ୍ନାଇଲାଲ ଫାଶୀଖୁଣ୍ଟରେ ଝୁଲି ପଡ଼ିଲେ । ମାତୃଭୂମି ପାଇଁ ଜୀବନ ଦେବାର ଆନନ୍ଦରେ ଫାଶୀଦିନ ତାଙ୍କର ଓଜନ ୧୬ ପାଉଣ୍ଡ ବଢ଼ି ଯାଇଥିବା ଜଣା ପଡ଼ିଥିଲା । ତାଙ୍କର ଶେଷ ଜୀବନର ଇଚ୍ଛାଥିଲା– ତାଙ୍କ ପୁନ୍ର ମଧ୍ୟ ଜନ୍ମଭୂମି ପାଇଁ ପ୍ରାଣ ଦେଉ ।

କହ୍ନାଇଲାଲଙ୍କର ଶବକୁ ନେବା ପାଇଁ ତାଙ୍କ ପରିବାର ଓ ବନ୍ଧୁମାନେ ଆସି ପହଞ୍ଚିଲେ । ଶବଟି କମଳ ଢଙ୍କା ହୋଇ ରହିଥାଏ । କମଳଟିକୁ ଟେକିବାକୁ କାହାର ସାହସ ପାଉ ନଥାଏ । ସମସ୍ତେ ଛିଡ଼ା ହୋଇ କାନ୍ଦୁଥିଲେ । ଜଣେ ଇଂରେଜ ଅଫସର ସେଠାରେ ଆସି ପହଞ୍ଚି,

କହିଲେ—"ଆପଣମାନେ କାନ୍ଦୁଛନ୍ତି କାହିଁକି ? ଯେଉଁ ଦେଶ ଏପରି ବୀରପୁତ୍ରକୁ ଜନ୍ମ ଦେଇ ନିଜକୁ ଗର୍ବ ମନେ କରେ, ତା' ପାଇଁ କାନ୍ଦିବା ଉଚିତ ନୁହେଁ ।" ଏହି ଦୁ'ପଦ କଥାରେ ସମସ୍ତଙ୍କ କାନ୍ଦ ବନ୍ଦ ହୋଇଯାଇଥିଲା ।

କେଵଡ଼ାତଳା ଶ୍ମଶାନରେ ତାଙ୍କର ଶବଦାହ କରାଯା ଥିଲା । ସେହି ଶବଯାତ୍ରାରେ ଯେପରି ଭିଡ଼ ହୋଇଥିଲା ପୂର୍ବରୁ ଏପରି କେବେ ହୋଇ ନଥିଲା । ଆଜି କେବଡ଼ାତଳା ଶ୍ମଶାନ ସ୍ୱାଧୀନ ଭାରତର ଏକ ତୀର୍ଥକ୍ଷେତ୍ର ହୋଇଯାଇଛି ।

ଜୟହିନ୍ଦ୍ !







ଯେଉଁମାନେ ବ୍ୟକ୍ତିଗତ ସ୍ୱାର୍ଥ ତ୍ୟାଗ କରି, ଜୀବନକୁ ବାଜି ଲଗାଇ ଦେଇ, ଜାତି ପାଇଁ ଆତ୍ମବଳି ଦିଅନ୍ତି, ସେମାନଙ୍କୁ ଶହୀଦ କୁହାଯାଏ । ଆମ ଦେଶ ଭାରତବର୍ଷ ଇଂରେଜ ଶାସନ ପୂର୍ବରୁ ଖଣ୍ଡ-ବିଖଣ୍ଡ ହୋଇ ବିଭିନ୍ନ ଶାସକମାନଙ୍କ ଦ୍ୱାରା ଶାସିତ ହୋଇଛି । ସେହି ସମୟ ମଧ୍ୟରେ ଦେଶ ଓ ଜାତି ପାଇଁ ଯେ, କେହି ଜୀବନୋତ୍ସର୍ଗ କରି ନାହାନ୍ତି, ସେ କଥା ଠିକ୍ ନୁହେଁ ।

ପ୍ରବଳ ପରାକ୍ରମୀ ଇଂରେଜ ଜାତିର ଶାସନ ଫଳରେ ଆମେ ଯେ କେବଳ ହରାଇଛନ୍ତି ଓ ଲାଞ୍ଛିତ ହୋଇଛନ୍ତି, ସେ କଥା ବି ସମ୍ପୂର୍ଣ୍ଣ ଠିକ୍ ନୁହେଁ । ଇଂରେଜ ଶାସନ ଫଳରେ "ଆମେ ସବୁ ଭାରତୀୟ ଗୋଟିଏ ଜାତି—ଗୋଟିଏ ମାଆର ସନ୍ତାନ, ଭାରତ ଗୋଟିଏ ଦେଶ" ହେବା ସମ୍ଭବ ହୋଇପାରିଛି ।

୧୮୫୭ ମସିହାର ସିପାହୀ ବିଦ୍ରୋହକୁ ଐତିହାସିକ-ମାନେ ଭାରତର ପ୍ରଥମ ସ୍ୱାଧୀନତା ସଂଗ୍ରାମ ଭାବରେ ଗ୍ରହଣ କରିଛନ୍ତି । ତଥାପି ଏଥିରେ ମତଭେଦ ଦେଖାଯାଏ । ସେ ଯାହାହେଉ—ସିପାହୀ ବିଦ୍ରୋହରେ ପ୍ରାଣତ୍ୟାଗ କରିଥିବା ବୀରମାନଙ୍କୁ ଶହୀଦ ହିସାବରେ ସମ୍ମାନ ଦିଆଯାଏ ।

ଭାରତର ପ୍ରଥମ ଶହୀଦ କିଏ ? ଏହା ଏକ ପ୍ରଶ୍ନବାଚୀ । ୧୮୫୭ ମସିହାର ସିପାହୀ ବିଦ୍ରୋହ ସାରା-

ଦେଶରେ ଶିହରଣ ସୃଷ୍ଟି କରିପାରିଥିଲା । ଅଧିକାଂଶ ରାଜ୍ୟର ସ୍ୱାଧୀନତା ସଂଗ୍ରାମୀ ଏଥିରେ ଯୋଗ ଦେଇଥିଲେ । ତେଣୁ ଏହା ସ୍ୱାଧୀନତା ସଂଗ୍ରାମର ଯୋଗ୍ୟତା ହାସଲ କରିପାରିଲା ।

୧୮୫୭ ମସିହାର ବହୁ ପୂର୍ବରୁ ଦେଶପ୍ରେମୀ ଜଗନ୍ ସେଠ୍ ଇଂରେଜମାନଙ୍କର ଚକ୍ରାନ୍ତ ଏବଂ ଯୋଜନାକୁ ଠିକ୍ ଭାବେ ଜାଣିପାରିଥିଲେ । ଜଗନ୍ ସେଠ୍‌ଙ୍କର ପୂରା ନାମ ଥିଲା ଜଗନ୍ ସେଠ୍ ରାମଜୀ ଦାସ ଗୁଡ଼ୱାଲା ।

ସେତେବେଳେ ତାଙ୍କର ବ୍ୟବସାୟ ୟୁରୋପ-ଆଫ୍ରିକାର ବହୁ ଦେଶରେ ଚାଲୁଥିଲା । ସେ ଥିଲେ, ଭାରତର ଜଣେ ବିଶିଷ୍ଟ କୋଟିପତି । ଦିଲ୍ଲୀର ବାଦଶାହା ବାହାଦୂର ଶାହାଙ୍କର ସେ ଥିଲେ ଅତି ଘନିଷ୍ଠ ବନ୍ଧୁ । ରାଜ୍ୟଶାସନ କାର୍ଯ୍ୟପାଇଁ ବାଦଶାହା ଜଗନ୍ ସେଠ୍‌ଙ୍କଠାରୁ ଲକ୍ଷ ଲକ୍ଷ ଟଙ୍କା ଧାର ଓ ଋଣ ସୂତ୍ରରେ ଆଣୁଥିଲେ । ଜଗନ୍ ସେଠ୍‌ଙ୍କର ଅପୂର୍ବ ବ୍ୟକ୍ତିତ୍ୱ, ଅମାପ ଦେଶପ୍ରେମ, ଅଗାଧ ସମ୍ପତ୍ତି ତାଙ୍କୁ ଯଥେଷ୍ଟ ସମ୍ମାନ ଦେଉଥିଲା ।

ଥରେ ଜଗନ୍ ସେଠ୍ ୟୁରୋପରେ ଥିବା ସମୟରେ ଭାରତ ବିରୋଧୀ ଚକ୍ରାନ୍ତ ବିଷୟରେ ଶୁଣିବାକୁ ପାଇଲେ । ହଠାତ୍ ସେ ନିଜ ଦେଶକୁ ଫେରି ଆସି, ତାଙ୍କର ଅନ୍ତରଙ୍ଗ ବନ୍ଧୁ ଦିଲ୍ଲୀର ବାଦଶାହା ବାହାଦୂରଶାହାଙ୍କ ଗୁପ୍ତ ମନ୍ତ୍ରଣା କଲେ । ବନ୍ଧୁଙ୍କ ସହଯୋଗରେ ବିରାଟ ଯୋଜନାର ପରିକଳ୍ପନା କରାଗଲା । ଭାରତର ଦେଶୀୟ ରାଜାମାନଙ୍କ ସହ ଯୋଗାଯୋଗ କରାଗଲା । ସମସ୍ତ ଦିଗରୁ ସାହାଯ୍ୟ ସହଯୋଗ ମିଳିବାର ପ୍ରତିଶ୍ରୁତି ପାଇ, ଜଗନ୍ ସେଠ୍‌ଙ୍କ ନେତୃତ୍ୱରେ ଇଂରେଜମାନଙ୍କ ସହ ସମ୍ମୁଖ ଯୁଦ୍ଧ ପାଇଁ ବାଦଶାହା ଡାକରା ଦେଲେ ।



ଅପ୍ରନଙ୍କ ଆକ୍ରମଣରେ ଇଂରେଜ ଅଫିସର ଅସ୍ତବ୍ୟସ୍ତ ହୋଇପଡ଼ିଲେ । କେତେକ ଇଂରେଜ ସୈନ୍ୟ ଓ ସାହେବ ମୃତ୍ୟୁର ଶିକାର ହେଲେ । ସାରା ଭାରତ ହୁଲୁସ୍ଥୂଲ ହୋଇ ପଡ଼ିଲା । ଯୋଜନାବଦ୍ଧ ଭାବେ ସଙ୍ଗଠିତ ଭାରତୀୟ ମୁକ୍ତିବାହିନୀ—ଦେଶୀୟ ରାଜାଙ୍କ ରଣକୌଶଳ ଓ ଗୁପ୍ତ ଷଡ଼ଯନ୍ତ୍ର ବିଷୟରେ ଇଂରେଜମାନେ ଅନ୍ତ ପାଉ ନଥା'ନ୍ତି ।

ଆମ ଦେଶରେ ଖିଖି-ମନାଇଙ୍କ ପରି ଦେଶଦ୍ରୋହୀର ଅଭାବ ନାହିଁ । ସାମାନ୍ୟ ଅର୍ଥର ପ୍ରଲୋଭନରେ ନିଜ ଦେଶ ନିଜ ଜାତିକୁ ଶତ୍ରୁ ହାତରେ ଟେକି ଦେବାକୁ ନୀଚମନା ବି ଏଠାରେ ଜନ୍ମ ନିଅନ୍ତି । ଫୁଲ ବଗିଚାରେ ବିଛୁଆତି ବେଳେ ବେଳେ ଉଠେ ।

ସେହିପରି ଜଣେ ଦେଶଦ୍ରୋହୀ ଭାରତୀୟ ସୁବିଧା ସୁଯୋଗ ଦେଖି ଇଂରେଜ ଅଫିସରଙ୍କୁ ଷଡ଼ଯନ୍ତ୍ର ବିଷୟରେ ସମସ୍ତ ବୁଝାଇ ଦେଲା । କ୍ଷଣିକ ଭିତରେ ସବୁ ଓଲଟ ପାଲଟ ହୋଇଗଲା । ସବୁ ଯୋଜନା ଭଣ୍ଡୁର ହୋଇଗଲା । ଶହ ଶହ ଦେଶପ୍ରେମୀ ବନ୍ଦୀ ହେଲେ । ଦେଶୀୟ ରାଜା ଓ

ବାଦଶାହଙ୍କ ସହ ଜଗନ୍ ସେଠ୍‌ଙ୍କ ଅକଥନୀୟ ଅତ୍ୟାଚାର ସହିବାକୁ ପଡ଼ିଲା । ଦେଶଦ୍ରୋହୀଟି ଯଦି ଆଉ ଗୋଟିଏ ଦିନ ବେଶି ବଞ୍ଚିଥାଆନ୍ତା, ଭାରତବର୍ଷକୁ ସ୍ୱାଧୀନ ହେବା ପାଇଁ ଏତେ ବର୍ଷ ଅପେକ୍ଷା କରିବାକୁ ପଡ଼ି ନଥା'ନ୍ତା ।

ବର୍ଷ୍ଣର ପରେ ମହାମାନ୍ୟ ଜଗନ୍ ସେଠୁଙ୍କୁ ଦିଲ୍ଲୀର ଚାନ୍ଦିନୀଚୌକ ଛକଠାରେ ଶିକାରୀ କୁକୁରମାନଙ୍କ ଦ୍ୱାରା କାମୁଡ଼ାଇ କାମୁଡ଼ାଇ ରକ୍ତାକ୍ତ ଅବସ୍ଥାରେ ଫାଶୀକାଠରେ ଝୁଲାଇ ଦେଲେ ।

ବହୁ ଅର୍ଥ, ଉଚ୍ଚ ପଦବୀର ପ୍ରଲୋଭନରେ ସେ ଭୁଲି ନଥିଲେ । ଫାଶୀ ପୂର୍ବରୁ ସେ ଶେଷ ଭିକ୍ଷା ମାଗିଥିଲେ ମୃତ୍ୟୁ । ଫାଶୀଖୁଣ୍ଟରେ ଠିଆ ହୋଇ ନିର୍ଭୀକ ଭାବେ କହିଥିଲେ—"ମୁଁ ଦେଶ ପାଇଁ ପ୍ରାଣ ଉତ୍ସର୍ଗ କରୁଛି । ଏ କଥା ନିଶ୍ଚିତ ଯେ, ଆମର ଲୁହଲହୁ ମିଶା ଭୂଇଁରୁ ଯେଉଁ ବୀର ସନ୍ତାନ ଜନ୍ମନେବେ, ସେମାନେ ଇଂରେଜ ସାମ୍ରାଜ୍ୟକୁ ରସାତଳଗାମୀ କରାଇବେ, ଏଥିରେ ତିଳେ ମାତ୍ର ସନ୍ଦେହ ନାହିଁ ।

ଜଗନ୍ ସେଠ୍ ଫାଶୀଖୁଣ୍ଟରେ ଝୁଲିପଡ଼ିଲେ, ତାଙ୍କର ନିର୍ଭୀକ ଓ ଦୃଢ଼ ଦେଶପ୍ରେମ ଦେଖି ଇଂରେଜମାନେ ଆଶ୍ଚର୍ଯ୍ୟ ହୋଇଗଲେ ।

ତେଣୁ ଜଗନ୍ ସେଠ୍ ଭାରତର 'ପ୍ରଥମ ଶହୀଦ'ର ଆସନ ଦାବୀ କରିବା ଯଥାର୍ଥ । ସେ ହେଉଛନ୍ତି- ପ୍ରଥମ ସ୍ୱାଧୀନତା ସଂଗ୍ରାମୀ । ପ୍ରଥମ ଶହୀଦ ।

ଜୟହିନ୍ଦ୍ !






ବାଲେଶ୍ୱର ଜିଲ୍ଲାର ଇରମ୍ ଗାଁ'ର ଦୋଳ ମେଳଣ ପଡ଼ିଆ ଆମ୍ବତୋଟା । କଟି କଟିଆ ଅନ୍ଧାରରେ ମଞ୍ଜି-ମିଞ୍ଜିଆ ଆଲୁଅ ଦେଉଥିବା ଲଣ୍ଠନ ଧରି କେତେ ଜଣ ଲୋକ କ'ଣ ଖୋଜୁଥା'ନ୍ତି । ହଠାତ୍ ସେମାନେ ଚମକି ପଡ଼ିଲେ— ତାଙ୍କର ପାଦ ଅଟକିଗଲା । ସେଇଠି ଗୁଳିମାଡ଼ ଖାଇ ଚିରଦିନ ପାଇଁ ଆଖି ବୁଜିଥିଲା—,,ବିଜୁଳି ।''

ତା' ଦେହର ରକ୍ତରେ କଅଁଳିଆ ଘାସମୂଳ ସନ୍ତେଇ ଯାଇଥାଏ । ଆଖି ଦୁଇଟା ମୁଦ ହୋଇ ଆସିଛି । ବଡ଼ ଭୟଙ୍କର ସେଇ ଦୃଶ୍ୟ ।

ଏମିତି କାହିଁକି ହେଲା ?

ଜାତୀୟ କବି ବାଞ୍ଛାନିଧିଙ୍କର ଘର ଥିଲା—ଏଇ ଇରମ୍ ଅଞ୍ଚଳରେ । ସେ ସ୍ୱାଧୀନତା ଆନ୍ଦୋଳନର ଜଣେ ବିଶିଷ୍ଟ ନେତାଥିଲେ । ତାଙ୍କର ଦେଶାତ୍ମବୋଧ ସଙ୍ଗୀତ ଆମ ରାଜ୍ୟରେ ଅପୂର୍ବ ଜାଗରଣ ସୃଷ୍ଟି କରୁଥିଲା । କବିଙ୍କ ବ୍ୟକ୍ତିତ୍ୱ ଓ ଦେଶପ୍ରେମ ଫଳରେ ସେ ଅଞ୍ଚଳରେ ସ୍ୱାଧୀନତାର ଆନ୍ଦୋଳନ ଲାଗି ରହିଥାଏ ।

କବିଙ୍କର ମୃତ୍ୟୁପରେ ତାଙ୍କ ନେତୃତ୍ୱରେ ଗଠିତ ମୁକ୍ତିବାହିନୀ ବହୁ ଅସୁବିଧାର ସମ୍ମୁଖୀନ ହେଉଥିଲେ

ବାଣୀ ହେଲା ମଧ୍ଯ, ସେମାନେ ଦୁଇଟି ଭାଗରେ ବିଭକ୍ତ ହେଲେ । ଗୋଟିଏ 'ଶାନ୍ତସେନା' ଅନ୍ୟଟି 'ବାନର ସେନା' । 'ଶାନ୍ତ ସେନା'ର 'କର ବା ମର' ।

'ବାନର ସେନା'ର ବାଣୀ ହେଲା—'ମରବା ମାର' । ସେମାନେ ଇରମ୍‌ର ଜମିଦାର ଓ ୟୁନିୟନ ସଭାପତିଙ୍କ, ଖଜଣା ନଦେବା ପାଇଁ ଲୋକମତ ସୃଷ୍ଟି କଲେ । ଜମିଦାର ଓ ସଭାପତି ପୋଲିସ୍ ଡକାଇ ବାସୁଦେବ-ପୁର ଥାନାରେ ୧୪୪ ଧାରା ଜାରି କଲେ । ଜନମେଳ ହେତୁ ବିପଦର ଆଶଙ୍କା କରି ପୁଲିସ୍ ବନ୍ଧୁକ, ଗୁଳିସହ ଇରମ୍ କମିଦାରଙ୍କ ଘରେ ଡେରା ପକାଇଲେ ।



ପୁଲିସ୍‌ର ଜିଦ୍ ସେମାନେ ସଭା ସମିତି କରାଇ ଦେବେ ନାହିଁ । ତେଣେ ସ୍ୱାଧୀନତା ସଂଗ୍ରାମୀମାନଙ୍କର ଜିଦ୍, ଯେ କୌଣସି ପ୍ରକାରେ ରକ୍ତ ଦେଲେ ବି ସଭା କରି ଗାନ୍ଧିଜୀଙ୍କ ଜୟଧ୍ୱନି ଦେବେ ।

ଏହାପରେ ଉଭୟ ସେନା ମିଶି ହଜାର ହଜାର ଲୋକଙ୍କୁ ଆମ୍ବଗଛ ତଳେ ବସାଇ ମହାତ୍ମା ଗାନ୍ଧୀ, ଗୋପବନ୍ଧୁ ଓ ବାଞ୍ଛାନିଧିଙ୍କ ବାଣୀ ଶୁଣାଇ ବକ୍ତୃତା ଦେଲେ । ପୁଲିସ୍ ବାହିନୀ ପଡ଼ିଆକୁ ଲମ୍ବିଥିବା ଗୋଟି ରାସ୍ତାରୁ ଫାଙ୍କ ଅବାକ କଲେ । ଆଶ୍ଚର୍ଯ୍ୟର କଥା, ଗୁଳିର ଶବ୍ଦକୁ ଖାତିର ନକରି ପ୍ରଜାମାନେ ଗୁଳି ଶବ୍ଦକୁ ତାଳଦେଇ ଉଚ୍ଚ ସ୍ୱରରେ ଜୟଧ୍ୱନି ଦେଉଥା'ନ୍ତି ।



ଲୋକଙ୍କ ଭିତରେଉତ୍ତେଜନା ବୃଦ୍ଧି ପାଇବାରୁ ଗୁଡ଼ୁମ୍ ଗୁଡ଼ୁମ୍ ହୋଇ ବନ୍ଧୁକ ଗର୍ଜି ଉଠିଲା । ଜାଲିଆନାୱାଲାବାଗ୍ ହତ୍ୟାକାଣ୍ଡପରି ଅନ୍ଧକୂପ ହତ୍ୟା ଚାଲିଲା । ତଥାପି ଇରମ୍‌ର ସ୍ୱାଧୀନତା ସଂଗ୍ରାମୀ ନେତାମାନେ ବଜ୍ର ଗମ୍ଭୀର କଣ୍ଠରେ "ମହାତ୍ମାଗାନ୍ଧୀଙ୍କର ଜୟ–ବନ୍ଦେ ମାତରମ୍–ଇନ୍‌କିଲାବ— ଜିନ୍ଦାବାଦ" ଧ୍ୱନି ଦେଉଥା'ନ୍ତି ।

କେତେ ନେତା, କେତେ ବୀର ସେଇ ନେମଲଣ ପଡ଼ିଆରେ ଉଳି ପଡ଼ିଲେ । ସେମାନଙ୍କ ମଧ୍ୟରେ ବଜୁଳି ଥିଲି ସବ କନଷ୍ଠ—ସେ ଶିଶୁ ଶହୀଦ ଭାବେ ଓଡ଼ିଶାର ନାମ ରଖିଗଲି ।

ବଜୁଳି ନାମ ତା'ର ସାର୍ଥକ ହେଲି । କ୍ଷଣିକ ଆଲୋକ ଦେଖାଇ ସେ ବଜୁଳିର ଧର୍ମ ରକ୍ଷା କଲି । ସ୍ୱାଧୀନତାର ସେତୁବନ୍ଧ ନିର୍ମାଣରେ ଗୁଣ୍ଡୁଚି ଭାବେ ବଜୁଳି ଅମର ହୋଇ ରହିଛି—ରହିଥିବ ।

ଜୟହିନ୍ଦ୍ !







# ଲେଖକଙ୍କ ପରିଚୟ

ଲେଖକ ଶ୍ରୀ କୃତ୍ତିବାସ ନାୟକ, କଟକ ଜିଲ୍ଲାର ରାଜକନିକା ବ୍ଲକରେ ଏକତଲା ଗ୍ରାମରେ ୧୯୫୭ରେ ଜନ୍ମ ଗ୍ରହଣ କରିଥିଲେ । ପିଲାବେଳୁ ଲେଖା ଆରମ୍ଭ ।

ବର୍ତ୍ତମାନ ସୁଦ୍ଧା ଓଡ଼ିଶାର ଶତାଧିକ ଲେଖା ବିଭିନ୍ନ ପତ୍ର ପତ୍ରିକାରେ ପ୍ରକାଶିତ । ଓଡ଼ିଆରେ ଏମ୍. ଏ. ପାସ୍ କରିଛନ୍ତି । ଓଡ଼ିଶାର ସମସ୍ତ ସାହିତ୍ୟ ସଂସ୍କୃତି ଅନୁଷ୍ଠାନ ସହ ସମ୍ପୃକ୍ତ । ବିଭିନ୍ନ ଅନୁଷ୍ଠାନ ଦ୍ୱାରା ସମ୍ମାନିତ ଓ ପୁରସ୍କୃତ ହୋଇଛନ୍ତି । ଆକାଶବାଣୀର ସେ ଜଣେ ଗୀତିକାର ଓ ନାଟ୍ୟକାର । ଏଥି ସହ ସେ ଆକାଶବାଣୀର ବିଭିନ୍ନ କାର୍ଯ୍ୟକ୍ରମରେ ଅଂଶ ଗ୍ରହଣ କରନ୍ତି । ତାଙ୍କର ୧୯୮୭ ସୁଦ୍ଧା ୧୮ ଖଣ୍ଡ ପୁସ୍ତକ ପ୍ରକାଶ ପାଇ ଲୋକପ୍ରିୟତା ଅର୍ଜନ କରିଛି । ସେ ଓଡ଼ିଆ 'ଶିଶୁସାହିତ୍ୟ' ଏକାଡେମୀର ଜଣେ ଆଜୀବନ ସଭ୍ୟ । ଉତ୍କଳ ଶିଶୁକିଶୋର ସାହିତ୍ୟ ସଂସଦର ସେ ହେଉଛନ୍ତି ସାଧାରଣ ସଂପାଦକ । କୋରାପୁଟ ପରି ଉପାନ୍ତ ଅଞ୍ଚଳରୁ ଦୀର୍ଘ ୧୧ ବର୍ଷ ହେଲା ଶିଶୁରାଇଜକୁ ନିୟମିତ ପ୍ରକାଶ କରି ସେ ଯଶସ୍ୱୀ ହୋଇଛନ୍ତି । ବର୍ତ୍ତମାନ ଉପର କୋଲାବ ଯୋଜନାରେ କର୍ମରତ । ଓଡ଼ିଆ ଶିଶୁ ଗଳ୍ପର ସ୍ୱରୂପ ଓ ବିକାଶର ଗବେଷକ । ତାଙ୍କର ଭବିଷ୍ୟତ ଆହୁରି ଉଜ୍ଜ୍ୱଳ ହେଉ ଏତିକି କାମନା ।

—ପ୍ରକାଶକ—